# ଚମ୍ପାବତୀ ।

( ବିୟୋଗାନ୍ତକାବ୍ୟ )

ଶ୍ରୀ ରତ୍ନାକର କବିଭୂଷଣ ସାହିତ୍ୟାଲଙ୍କାର
ପ୍ରଣୀତ ।

— *○ * –

ଶ୍ରୀ ଦୀନବନ୍ଧୁ ଗଡନାୟକଙ୍କ ପ୍ରେସ୍‌ସେକ୍ରେଟେରୀଙ୍କଦ୍ୱାରା
ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସ୍‌ରେ
ମୁଦ୍ରିତ ।

ବାମଣ୍ଡା ।

ମୂଲ୍ୟ ୫° ।/ ମାତ୍ର

# ଉତ୍ସର୍ଗପତ୍ର ।

ପ୍ରଥିତଯଶା

ଶ୍ରୀଲ ଶ୍ରୀଯୁକ୍ତ ମହାରାଜ ମଦନ ମୋହନ
ସିଂହଦେବ ଧରାକୋଟଧରାଧୀଶ୍ୱର ମହୋଦୟ
ଆଶ୍ରିତ ବତ୍ସଳେଷୁ :—

ସବିନୟ ନିବେଦନ ମିଦଂ

ସମ୍ମାନାସ୍ପଦ ଶ୍ରୀମନ୍ମହାରାଜ, ଶ୍ରୀଛାମୁଙ୍କଠାରୁ "ନୀତି ପ୍ରଦୀପ" ଓ "ସଂଯୁକ୍ତା" ରଚନା ସମ୍ବନ୍ଧେ ମୁଁ ଯେଉଁ ଉତ୍ସାହପ୍ରଦ ଅନୁଗ୍ରହଲିପି ପାଇଥିଲି ତହିଁରୁ ଶ୍ରୀଛାମୁ ଜଣେ ଆଦର୍ଶ ସାହିତ୍ୟ ରସିକ ଓ ଗ୍ରାହକ ଥିବାର ପରିଚୟ ପାଇଥିଲି ।

ଏତଦ୍ଭିନ୍ନ ଶ୍ରୀଛାମୁ ସ୍ୱୀୟ ଅସାଧାରଣ ପ୍ରତିଭା ବଳରେ ବର୍ତ୍ତମାନ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କ ବ୍ୟବସ୍ଥା-ପକ ସଭାର ସଦସ୍ୟ ପଦରେ ବରିତ ହୋଇ ଅଛନ୍ତି ଏହା ଅଳ୍ପ ସମ୍ମାନ ଓ ଗୌରବର କଥା ନୁହେ ।

ଏହି ସମସ୍ତ କାରଣରୁ ଶ୍ରୀଛାମୁଙ୍କ ପ୍ରତି ମୋହର ଆନ୍ତରିକ ଶ୍ରଦ୍ଧା, ଭକ୍ତି ଜାତ ହୋଇଅଛି । ଅତଏବ ତହିଁର ନିଦର୍ଶନସ୍ୱରୂପ ଏହି "ଚନ୍ଦ୍ରାବଳୀ" କ୍ଷୁଦ୍ରକାବ୍ୟ ଖଣ୍ଡିକ ଶ୍ରୀଛାମୁଙ୍କ ପବିତ୍ର କରକମଳରେ ଅର୍ପଣ କରୁ-ଅଛି । ଗ୍ରହଣାନୁମତି ହେଲେ କୃତକୃତ୍ୟ ହେବି

ବଶମ୍ବଦ

| | |
|---|---|
| [illegible] ବାମଣ୍ଡା | ଶ୍ରୀରତ୍ନାକର କବିଭୂଷଣ |
| ତା ୨୬ । ୧୦ । ୧୦ | ସାହିତ୍ୟାଲଙ୍କାର |

କବିବର

୰ ରାୟ ରାଧାନାଥରାୟ ବାହାଦୁର

ଓଡ଼ିଶା ଶିକ୍ଷା ବିଭାଗର ଭୂତପୂର୍ବ ଇନସ୍ପେକ୍ଟର ମହୋ-
ଦୟଙ୍କର

## ମନ୍ତବ୍ୟ

ପଣ୍ଡିତ ଶ୍ରୀଯୁକ୍ତ ରତ୍ନାକର କବିଭୂଷଣ ମହା-
ଶୟଙ୍କ ରଚନା ମୁଁ ଇତଃପୂର୍ବେ ସମୟ ସମୟରେ ପାଠ-
କରି ବିଶେଷ ପ୍ରୀତିଲାଭ କରିଥିଲି । "ଚମ୍ପାବତୀ"
କାବ୍ୟ କବିଙ୍କର ଶକ୍ତିମତା ଏବ ସାହିତ୍ୟଜ୍ଞତାର
ସ୍ପଷ୍ଟତର ପରିଚାୟକ ।

ଶ୍ରୀରାଧାନାଥ ରାୟ

—୧୦୪—

ସମ୍ବଲପୁର ହିତୈଷିଣୀ ସମ୍ବାଦ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ଗଡନାୟକ ମହାଶୟଙ୍କର

## ମନ୍ତବ୍ୟ

ଶ୍ରୀଯୁକ୍ତ ରତ୍ନାକର ଶର୍ମ୍ମା କବିଭୂଷଣ ମହାଶୟଙ୍କ ରଚିତ "ଚମ୍ପାବତୀ" ର ପାଣ୍ଡୁଲିପି ମୁଁ ଆଦ୍ୟୋପାନ୍ତ ପାଠକରି ଅତ୍ୟନ୍ତ ପ୍ରୀତି ହେଲି । ବୋଲବାହୁଲ୍ୟ କବିଙ୍କର ପ୍ରତିଭା ଏଥିରେ ସ୍ପଷ୍ଟଭାବେ ସ୍ଫୁରଣ ହୋଇଅଛି । ଯେଉଁ ଦେଶରେ ଜଣେ 'ସୁକବି' ର ଉଦୟ ହୁଏ ସେ ଦେଶ ସୌଭାଗ୍ୟବାନ "। କବି ରତ୍ନାକର-ଶର୍ମ୍ମାଙ୍କୁ ପାଇ ଅମ୍ଭେମାନେ ଗୌରବ ଅନୁଭବ କରୁଅଛୁଁ ।

ଶ୍ରୀଦୀନବନ୍ଧୁ ଗଡନାୟକ ।

# ଚମ୍ପାବତୀ ।

ରାଗ ବଙ୍ଗଳାଶ୍ରୀ ।

## ପ୍ରଥମସର୍ଗ ।

ତୁଷାର ଆବୃତ    ଅଭ୍ରଭେଦ ଚୂଡ଼

ଟେକିଅଛି ହିମାଳୟ ,

କାଶ୍ମୀର ଦେଶର    ନରପତିଙ୍କର

କଣେ ଶୁକ୍ଳପକ୍ଷ ଚନ୍ଦ୍ର ?

ସୁଜଳା ସୁଫଳା    କରଦେଶ ଯହିଁ

ଝିଲମ ସ୍ନିଗ୍ଧ ସଲିଳା ,

କଳ କଳ ସ୍ୱନେ    ବହି ଯାଉଅଛି

ଦେଖାଇ ଲହରୀ ଲୀଳା ।

ତେଜସ୍ୱିନୀ ଶୀଳା-    ବକ୍ଷ ପ୍ରବାହିନୀ

ବିତସ୍ତା-ଗିରି ନନ୍ଦିନୀ ,

ଯିରେ ମର୍ତ୍ତ୍ୟ ସ୍ୱର୍ଗ    ଶ୍ରୀନଗର ଧରି

ହୋଇଛି ଭାଗ୍ୟ ଶାଳିନୀ ।

ନ୍ୱବାସେ ଉଲର    ଦାଲ ହ୍ରଦ ବେନି

ଅଛନ୍ତି ସ୍ୱଚ୍ଛ ଦର୍ପଣ ,

ଯହିଁ ଗିରିବର ,    ଶ୍ରୀନଗର ନିଜ

ମୂର୍ତ୍ତି କରନ୍ତି ଦର୍ଶନ ।

ନାନା କାରୁକାର୍ଯ୍ୟେ   ଖଚିତ, ପ୍ରକାଣ୍ଡ
ମନ୍ଦିର କି ଶୋଭାବନ ,
ବିଜୟ ମାର୍ତ୍ତଣ୍ଡ — ଦେବ ଯହିଁ ପାପ
ତିମିର କରି ଖଣ୍ଡନ ।
ବସନ୍ତେ ବିବିଧ   ଫଳ ପୁଷ୍ପେ ହୁଏ
ରମଣୀୟ ଯେଉଁ ଦେଶ ,
ସେ କାଶ୍ମୀର ଦେଶେ   ରାଜତ୍ୱ କରନ୍ତି
ନରେନ୍ଦ୍ରାଦିତ୍ୟ ନରେଶ ।
ହିମାଦ୍ରି-କାନ୍ତାରେ   ସ୍ୱଚ୍ଛନ୍ଦ ବିହାର
କରିଣୀର ଆଲିଙ୍ଗନ , —
ସୁଖଭୋଗ ଅବା —   ରାଜାଙ୍କର ବାରି
ମଣ୍ଡନ୍ତି ମତ୍ତ ବାରଣ ।
ପବନ ସମାନ   ଗମନେ ରଞ୍ଜନ
ପୁଷ୍ଟୁଳ ବାଜି ସକଳ ,
ହ୍ରେଷାରବେ ନୃପ-   ବରଙ୍କ ମନ୍ଦୁରା
କରୁ ଅଛନ୍ତି ଚହଳ ।
ହିମାଳୟ ଉଚ୍ଚ — ଉପତ୍ୟକା ଶଷ୍ପ —
ଆହାର କରି ପୂରଣ ,
ପୟସ୍ୱିନୀ ପୀନ — ଚମରୀ ଚରନ୍ତି
ଗୋଶାଳାରେ ଅନୁକ୍ଷଣ ।
ଯେଉଁ କସ୍ତୁରିକା —   ମୃଗ ହିମାଳୟେ
ହେଉଥିଲେ ବିଶୋଭିତ ,
କସ୍ତୁରୀ ସୁବାସେ   ଭୂପତି ଅଜିର
କରୁଛନ୍ତି ସୁରଭିତ ।

ଯେଉଁ କନ୍ଦର ହିମାଦ୍ରି ଗୁହାର
    ବନାଉଥିଲେ ଅନ୍ଧାର ,
ଅଛିସେ ରତନେ ପୂର୍ଣ୍ଣ ହୋଇଅଛି
    ନୃପତିଙ୍କ ରତ୍ନାଗାର ।
ବିତସ୍ତା ତଟିନୀ ଧୀରବହେ ପ୍ରେମ —
    ଅନୁରାଗେ ପ୍ରିୟାସଙ୍ଗେ ,
ବନ୍ୟ ଫଳାହାରେ ଧନ ନେଉଥିଲ
    ସ୍ୱାଧୀନରେ ନାନାରଙ୍ଗେ ।
ଶୁକ, ରତ୍ନିସ୍ୱର୍ଣ୍ଣ — ପଞ୍ଜୁରୀରେ କରେ
    ସୁସ୍ୱାଦୁ ଫଳ ଅଶନ ,
ତଥାପି ସେ ଦୂରେ ମରୁଛୁ ନରଚେ
    ସେ ସୁଖ କରି ସ୍ମରଣ ।
ନାନା ସ୍ୱାଦୁ ଦ୍ରବ୍ୟ ଦେଇ ରାଜରାଣୀ
    ପାଳି ଅଛନ୍ତି ହରଷେ ,
ସାର, ସ୍ମରି ଦୂରେ ପଲ୍ଲବ-ଶ୍ୟାମଳ-
    ଶଇଲ ଶୋଭା ମାନସେ ।
କୁଙ୍କୁମ-ସୌରଭ ଉନ୍ମତ୍ତଭାବେ କରି
    ବିଚରଣ ସମୀରଣ ,
କାଶ୍ମୀର ଦେଶର ଜନ ଗଣଙ୍କର
    କରଇ ମନ ହରଣ ।
ପ୍ରଜାବତ୍ସେ ନୃପ- ରଞ୍ଜନ କରନ୍ତି
    ପୁତ୍ର ସମାନ ପାଳନ ,
ଆଶ୍ରିତ-ବତ୍ସଳ ଦୁର୍ଜ୍ଜନ - ଦୃଶର
    ପକ୍ଷେ ସାକ୍ଷାତ ଜ୍ୱଳନ ।

ବୃଦ୍ଧ ବୟସରେ    ଭୂପଙ୍କ ଜନମ
    ହେଲେ ସୁନ୍ଦର ନନ୍ଦନ,
ବିବିଧ ଉତ୍ସବ    କରି ଦେଲେ ନାମ
    ସାନନ୍ଦେ ମୀନ କେତନ ।

କ୍ରମେ କୁମାରଙ୍କ    ଶରୀରରେ କଲା
    ଯଉବନ ଅଧିକାର,
ରୂପଦେଖି ମନେ    ଆସେ, ଦେହଧରି
    ମର୍ତ୍ତ୍ୟେ କି ବିଜୟେ ମାର ?

ମନ୍ତ୍ରୀସୁତ "ମିତ୍ର —    ଭାନୁ" ସହିତରେ
    ହୋଇଥିଲେ ବେନମିତ,
କ୍ଷୀର, ନୀରବତ    ଅଭେଦ ଭାବରେ
    ମିଶିଥିଲା ବେନଚିତ ।

ଦିନେ ରାଣୀସଙ୍ଗେ    ନୃପତି ଏକାନ୍ତେ
    କଲେ ବିଚାର ଏସନ,
"କରିବା ପୁତ୍ରର    ବିବାହ ବନ୍ଧନ
    ହେଲା ଆସି ଯଉବନ ।

ଏକମାତ୍ର ପୁତ୍ର    ଅଟଇ ଆମ୍ଭର
    ଯେସନ ରଙ୍କ ରତନ,
ତାର ମନୋମତ    ପାତ୍ରୀ ସଙ୍ଗେ ତାକୁ
    କରାଇବା ସମ୍ମିଳନ" ।

ବିଚାର ଅନ୍ତରେ    କହନ୍ତି ସଦ୍ଭାବ —
    — ତନୟେ ଡକାଇ ପାଶ,
"କେଉଁ ଦେଶ ରାଜ —    ସୁତା ହେବ ବଧୂ
    ସୁତ ଆଗେ ବୁଝିଆସ" ।

ଏ ଅଦେଶପାଇ  ମିତ୍ରଙ୍କ ଥାଇଁ ଉପନ୍ତ
 ଗଲେ ରାଜସୁତ ଥାଟ ,
ହସ ହସ ମୁଖେ  କହିଲେ “ ଭୋମିତ
 ଅଛି ତୁମ୍ଭ ବଡଭାଗ୍ୟ ।
ତୁମ୍ଭର ଅଭୀଷ୍ଟ  –  ପାର୍ବୀପଙ୍କେ ପିତା
 ଦଭଦେବେ ଛନ୍ଦଭାଳ ,
ପ୍ରୀତି-ସୁଧା-ଭୋଗ  ପାଇଁ ନୈବେଦନେ
 ପଢ଼ିଲହେ ତୁମ୍ଭପାଲି ।
କହ କେଉଁ ଦେଶ-  ରାଜସୁତା ହେବେ
 ତବଅଙ୍କ ବିହାରିଣୀ ?
ତୁମ୍ଭଙ୍କୁ ଲଭିବେ  ପ୍ରାଣନାଥ ରୂପେ
 କେଏତେ ଭାଗ୍ୟଶାଳିନୀ ?
କେଉଁ ରାଜସୁତା -  ସୌଭାଗ୍ୟରେ ମିତ
 ପୂର୍ବ ତପସ୍ୟା ଫଳରେ ;
କାଶ୍ମୀର - ଗଗନ  ପର୍ବ ଶର୍ବରୀଶ
 ଧରିବେ ନିଜ କୋଳରେ ? ”
“କହୁଁଟଣେ ଅଛି  ପାହିଥିଲ ରାତ ”
 କହନ୍ତି ନୃପ କୁମାର ,
“ତୁମ୍ଭ ତୁଣ୍ଡୁ ଯାହା  ଶୁଣିଲି ମିତ ମୁଁ
 ଏ ଅଶୁଭ ସମାଚାର ।
ହନର ମୋହିନୀ  ରାବୀର ତରଙ୍ଗିଣୀ
 ଅଟନ୍ତି ନାରୀ ପଦ୍ମିନୀ ,
ନାରୀରଙ୍କ ନର -  ମାନଙ୍କ ମଧ୍ୟେ
 କଥନ୍ତି ବଚନେ ହଣି ।

ନାରୀ ମୁଖ ସୁଧା — ତୁମେ ସ୍ତ୍ରୈଣନରେ
ପିଉଥାନ୍ତ ହଳାହଳ ,
ନାରୀଠାରେ ଅନ୍ତ — ହନ୍ତୁ ଅପେକ୍ଷା
ପ୍ରାଣ ତେଜିବାର ଭଲ ।
ନାରୀଲାଗି ମଲ କୀଚକ ରାବଣ
ନୃପତି ହେଲ ନିର୍ବଂଶ ,
ଏହା ଜାଣି ଜାଣି କେହେବ ଦୃଢ଼ଚେତା
ଅବଳା ପ୍ରେମରେ ବଶ ।
ଏଦୃଶ୍ୟ ପ୍ରସ୍ତାବ ହୀନ୍ୟ ଏଙ୍କାବନେ
ଲଙ୍ଘିନାହିଁ ତବ କଥା ,
କହୁଅଛି ହିତ — ଥିରି ଶୁଣି କହି
ନରନାଥ ମନୋବ୍ୟଥା ” ।
ବୁଝାଇଲେ ଯେତେ ପ୍ରକାରେ ସେକଥା
ମିତଙ୍କୁ ମନ୍ତ୍ରୀ ନନ୍ଦନ ,
ସବୁ ହେଲା ବ୍ୟର୍ଥ ଯସ୍ମୁ ହଗଲତେ
ଯେସନ ସେତୁ ବନ୍ଧନ ।
ବୁଦ୍ଧି ବାଟ ବନ୍ଧୁ ନହିଁଲା ଅଉ
ଦେବାଲାଗି ଉପଦେଶ ,
ରଜା ରାଣୀ ଆଗେ କଲେ ନିବେଦନ
ମିତ୍ରଭାନୁ ସବିଶେଷ ।
ଶାର୍ଦ୍ଦୁଳ ସମକ୍ଷେ ହରିଣୀର ପ୍ରାୟ
ହେଲେ ତାଙ୍କ ବୁଦ୍ଧିଭ୍ରଂଶ ,
ବଉପାଟେ ପୁଣ ମନ ଫେଂଗ୍ରାଇବେ
କଲେ ଏହି ପରାମର୍ଶ ।

ଅବଶେଷେ ବୃଦ୍ଧ — ମନ୍ତ୍ରୀ ସହିତରେ
　ଏ ମନ୍ତ୍ରଣା ଢଳେଇବାର ,
ଦେଶ-ଗଣ୍ୟ ମାନ୍ୟ ଲୋକଙ୍କୁ ନୃପତି
　ଠୁଳକଲେ ଏକଠାର ।
ସର୍ବ ସମକ୍ଷରେ କୁମାରେ ଡକାଇ
　କହିଲେ ଏହି ବଚନ ,
"ପିତା ବୋଲିଯେବେ ଅମ୍ଭଠାରେ ଭକ୍ତି
　ଏ ଆଜ୍ଞା କର ପାଳନ ।
ନକର ବ୍ୟର୍ଥ ଅତୁଳ ବିଭବ
　ପବିତ୍ର ନର ଜନମ ,
ରାଜ୍ୟରକ୍ଷା ଲାଗି ବିଭାହୁଅ ବାବୁ
　ପାଳ ଗାର୍ହସ୍ଥ୍ୟ ଧରମ ।
ଏକମାତ୍ର ତୁହିଁ ଅଟୁରେ ତନୟ
　ଯେହ୍ନେ ରଙ୍କର ରତନ ,
ପୁତ୍ର ବଧୂ ମୁଖ ଦେଖିଲେ ବାବୁରେ
　ସାର୍ଥ ମଣିବୁଁ ଜୀବନ" ।
ରାଜାଙ୍କ ବଚନ ଶୁଣି ଯୁବବରେ
　କଲେ ପୁତ୍ର ନିବେଦନ ,
"ଜାଣୁଛି ପାତକ ଅଛୁତେ ଜନକ
　ପିତାଜ୍ଞା କଲେ ଲଙ୍ଘନ ।
ଶ୍ରୀଚରଣେ ମୋର କାତରେ ଭିକ୍ଷା
　କରନ୍ତୁ ଦୋଷ ମାର୍ଜ୍ଜନା ,
ଆଉ ସବୁ ଆଜ୍ଞା ଶିରୋଧାର୍ଯ୍ୟ ଏହା
　ନକରିବି ମୁଁ ପାଳନ" ।

ସୁଚତୁର ଜଲେ ଅଦେଶ ନୃପତି
କୋଧରେ ହୋଇ ଅଜ୍ଞାନ ,
ରାଜପୁରାନ୍ତରେ ଜାର୍ଣ୍ଣ ସୌଧେହେଲା
ତାଙ୍କର ଆବାସ ସ୍ଥାନ ।
ଜଣେ ମାତ୍ର ଭୃତ୍ୟ — ରହିଲା ନିଯୁକ୍ତ
କାର୍ଯ୍ୟ ସମାଧାନ ପାଇଁ ,
ସମୟେ ସମୟେ ମେଷ , ମିତ୍ରଭାନୁ
ସାକ୍ଷାତ କରନ୍ତି ଯାଇ ।
ରାଜ ଅନ୍ତଃପୁରୁ ସେ ଜାର୍ଣ୍ଣ ସୌଧକୁ
ଧୁଖ ମଣିଲେ କୁମାର ,
ହର୍ଷିତ ଅନ୍ତରେ ଉଦ୍ଧ୍ୱ ସହିତରେ
କଲେ ତହିଁରେ ବିହାର ।
ନାହିଁଅନ୍ତି ତୃପ୍ତ ଯେହୁ ରମ୍ୟହର୍ମ୍ମ୍ୟ
ଯେସନ ଅମରାବତୀ ,
ଆଜି ଜାର୍ଣ୍ଣ ସୌଧ ହେଲା ତାଙ୍କବାସ
ହତାଶ କର୍ମର ଗତି ! !

—:୦:—

ଦ୍ୱିତୀୟସର୍ଗ ।

କାଶ୍ମୀର - ପାର୍ଶ୍ୱରେ ଦରଦ ନାମରେ
ରାଜେ ଦେଶ ମନୋହର ,
ସେଦେଶେ ରାଜତ୍ୱ କରନ୍ତି ନୃପତି
ନାମ ପ୍ରତାପ ଈଶ୍ୱର ।
ଅତୁଳ ବିଭବେ ଥିଲା ପରିପୂର୍ଣ୍ଣ
ନୃପତିଙ୍କ ରତ୍ନାଳୟ ,

ସୁଶାସନ ହେତୁ　　ସ୍ୱପନରେ ଜଣା
　　ନଥିଲା ତସ୍କର--ଭୟ ।
ପରଜା ଜନସ୍ତୁ　　କରନ୍ତି ରାଜାଙ୍କୁ
　　ପିତା ସମାନ　ଦର୍ଶନ ,
ସାକ୍ଷାତ ଶମନ　　ପରାସ୍ତୁ ମଣନ୍ତି
　　ତାହାଙ୍କୁ ଦୁର୍ଜନ ଗଣ ।
ପ୍ରାର୍ଥୀ ଗଣଙ୍କର　　ପକ୍ଷେ କଳ୍ପଦ୍ରୁମ
　　ଅଟନ୍ତି ସେ ନୃପବର ,
ନାରୀଗଣ ତାଙ୍କୁ　　କରନ୍ତି ଲୋକନ
　　ଯେସନ ସାକ୍ଷାତ ସ୍ମର ।
ବାକ୍ୟେ　ବୃହସ୍ପତି　　ବିଭବେ କୁବେର
　　ମାନେଯେହ୍ନେ ଦୁର୍ଯ୍ୟୋଧନ ,
ଶରେ　ଅରଜୁନ　　ଦାନେ ବଳିରାସ୍ତୁ
　　ପରାସ୍ତୁ ଥିଲେ ରାଜନ ।
ବାତ୍ସଲ୍ୟ ପ୍ରକାଶି　　ଆଶ୍ରିତ ଗଣର
　　ହରି ନେଉଥିଲେ ମନ ,
ପ୍ରସନ୍ନ　ନୟନ　　କମଳେ ଅନାଇଁ
　　କରନ୍ତି ଦୁଃଖ ହରଣ ।
ନୃପ ମନୋହାରୀ　　ରାଣୀ ତିଲୋତ୍ତମା
　　ନାନାଗୁଣ　ଅଲଂକୃତା ,
ପ୍ରସବ କଲେ ସେ　　ପ୍ରଥମ ଗର୍ଭରେ
　　ଏକ ମନୋରମା ସୁତା ।
କପାଳ ଲେଖନ　　କେକରିବ ଅନ
　　ହେଲା ସ୍ଥବିର ବୟସ ,

ଦେବେଶଙ୍କ ପୂଜ — ଲଭ ନହେବାରୁ
ନୃପତି ମନ ବିରସ ।
ଏକମାତ୍ର ସୁତା — ଚମ୍ପାବତୀ ହେଲା
ଦମ୍ପତି ନେତ୍ର ପିତୁଳା ,
ତାମୁଖ ସରୋଜ ଦେଖି କ୍ରମେମନୁ
ହୃଦଦୁଃଖ ଗଲେଭୁଲି ।
ଶୁକ୍ଳ-ଶଶିକଳା ପରାୟେ ବଢ଼ିଲେ
ନୃପ-ତନୟା-ରତନ ,
କ୍ରମେ ଅଙ୍ଗରାଜ୍ୟେ ଯୌବନ ସମୟେ
କଲାଆସି ରାଜପଣ ।
ସୁଯୋଗ୍ୟ ପାତ୍ରରେ କରି ରାଜ୍ୟସହ
ସୁତା-ରତନ ଅର୍ପଣ ,
ପ୍ରୟାଗ ତୀର୍ଥରେ ଯାଇ ଆଚରିବେ
ବ୍ରତ ପ୍ରାୟୋପବେଶନ ।
ଏମନ୍ତ ମନ୍ତ୍ରଣା କରି ରାଜା ରାଣୀ
ଚମ୍ପାବତୀ-ସହଚରୀ ,
କନକ ଲତାକୁ ପାଶକୁ ଡକାଇ
କହନ୍ତି ଗୁପତ କରି ।
"କହିବୁ କନକ — ଲତା ତୁମ୍ଭେମାଆଗେ
କେବଣ ନୃପ ତନୟେ ,
ପତିପଦେ ତେମା ବରିବା ପାଇଁ କି
ମନେ କରିଛି ନିଶ୍ଚୟେ ।
ସ୍ବୟମ୍ବର ବ୍ୟୟସେ ବହିବାକୁ ଅମ୍ଭେ
ଅସମର୍ଥ ରାଜ୍ୟଭାର ,

ତାକୁ ସର୍ବସ୍ୱ        କରବୁଁ ଅର୍ପଣ
    ବାଞ୍ଛିତ ପାଦେ ତାହାର ।"
ଏ ବଚନ ଶୁଣି        ହର୍ଷେ ହେମାପାଣେ
    ମେଲିଲା କନକ ଲତା ,
ନାଭୂତେ ବସାଇ        ହସ ହସ ମୁଖେ
    କହଇ ଏମନ୍ତ କଥା ।
"ଅଜି ତୁମ୍ଭ ବଡ — ଭାଗ୍ୟ ଗୋ ସଜନି
    ଦେବ ଶୁଭ ସମାଚାର ,
ହେବ ହର୍ଷୋତ୍ଫୁଲ୍ଲ        ଶୁଣି ସଖି, ଯେହ୍ନେ
    ଚନ୍ଦ୍ରଦେଖି ପାରାବାର ।
ରସିକ କାଞ୍ଚନ -- ସଙ୍ଗତେ ମାଣିକ୍ୟ-
    ପ୍ରଶସ୍ତ ହେବ ଉଚିତ ,
କେଉଁ ଶ୍ରୀକସୁତ        ଏତେ ଭାଗ୍ୟଶୀଳ
    କହଗୋ ନାମ ତୁରିତ ?
ଦରଦ - କାସାର — ଫୁଲ୍ଲ ସରୋଜିନୀ
    ତବ ଅଧର ଅମୃତ ,
ଭୃଙ୍ଗରୂପେ ପାନ        କରିବେ କେସୁବା
    ଅର୍ଜିଛନ୍ତି ଗୋ ସୁକୃତ ?
ଚନ୍ଦନ ତରୁରେ        ଏଲା ଲତାପ୍ରାୟ
    କା'ର ଗଳେ ବାହୁପାଶ ,
ଛନ୍ଦିବଗୋ ତୁମ୍ଭେ        କାର ଏତେଭାଗ୍ୟ
    କରସଖି ପରକାଶ ?
ବିଷ୍ଣୁଙ୍କର ଅଙ୍କ        ଲକ୍ଷ୍ମୀପ୍ରାୟ ତୁମ୍ଭେ
    ଅଲଙ୍କୃତ କାରଅଙ୍କ ,

କରିବ ମୋ ଆଗେ କହ ଅକପଟେ
ସଜନ ହୋଇ ବାଃମଙ୍କ ।
ମଙ୍ଗଳ କାର୍ଯ୍ୟରେ ବିଳମ୍ବ କରିବା
ନୁହଇ କେବେ ଉଚିତ ,
ସୌଭାଗ୍ୟ ବଶରୁ ପିତା , ମାତା ତୁମ୍ଭ-
ଉପରେ ପ୍ରସନ୍ନ ଚିତ୍ତ ।
ରସିକ ଶେଖର ଲଭିକର ତୁମ୍ଭେ
ଅମ୍ଭଙ୍କୁ କରିବ ପର ,
ତଥାପି ତୁମ୍ଭର ଏ ସୌଭାଗ୍ୟେ ସତ୍ୱ
ହର୍ଷିତ ଅମ୍ଭ ଅନ୍ତର ” ।
ଶୁଣି ସଖି ବାଣୀ ସେ ରାଜ ନନ୍ଦନୀ
ନେନକର୍ଣ୍ଣେ ଦେଲେକର ,
“କହନା, କହନା ସଖି ସେ କଥାରେ
ଆଉ ମୋହର ଆଗର ।
ଶୁଣିଛିରେ ସଖି ପୁରୁଷେ ବହନ୍ତି
ବଡ ନିର୍ଦ୍ଦୟ ଶରୀର ,
ଲଙ୍ଗର ପରାୟ ଏକ ରମଣୀରେ
ନୁହେ ତାଙ୍କ ମନସ୍ଥିର ।
ସକଳ କାର୍ଯ୍ୟରେ ନାରୀ ମାନଙ୍କୁ ସେ
କରନ୍ତି ପଦ କିଙ୍କରୀ ,
ଯେବାଲା ଭଜନ୍ତି ପୁଂସେ , ସ୍ୱାଧୀନତା—
ରତ୍ନ ହରନ୍ତି ତାଙ୍କର ।
ନାନାଶାସ୍ତ୍ରେ ସଖି ଶୁଣିଛି ମୁହିଁରେ
ନର ବିଶ୍ୱାସ ଘାତକ ।

ତାଙ୍କୁ ଭଜିବାର    ଠାରୁ ଶତଗୁଣେ
    ଶ୍ରେୟଃ ନିବାସ ନରକ ।
ନ ହେବ ବିବାହ    ଯେତେ କାଳମୋର
    ଏଥିରେ ଥିବ ଜୀବନ ,
କରିଅଛି ସ୍ଥିର    ଧରିବଇଁ 'ଚିର—
    କୁମାରୀ ବ୍ରତ' ପାଳନ " ।
ଯେତେ ପରକାରେ    ବୁଝାଇଲେ ସଖୀ
    ତେମାନ୍ତା ବୁଝିଲା ନାହିଁ ,
ତେମା ଅଭିମତ    ରାଜା ରାଣୀଆଗେ
    ସଖୀ ଜଣାଇଲେ ଯାଇ ।
ରାଜା , ରାଣୀ ଶୁଣି    ତେମା ମନୋଭାବ
    ହେଲେ ଅତ୍ୟନ୍ତ ଚିନ୍ତିତ ,
ପ୍ରତୀକାର ଚିନ୍ତା    କଲେ କି ଉପାୟେ
    ଫେରାଇବେ ତାଙ୍କଚିତ୍ତ ।
ଅବଶେଷେ ସ୍ଥିର    କଲେ ଏ ପ୍ରକାର
    ମାନସରେ ଚିନ୍ତା କରି ,
ନିତେ ଯେବେ ତାଙ୍କୁ — କହିବା ଅମର
    କଥା ନପାରିବ ଟାଳି ।
ସମ୍ମୁଖକୁ ଯାଇ —    କହନ୍ତି ତେମାକୁ
    " ହେଉଛୁ ବୟଃ ଅଧିକା ,
ବିବାହ ହେବାକୁ    କର ଅଙ୍ଗୀକାର
    ରଖ ଅମର ଏ ବାଣୀ ।
'ସନ୍ତତି ମଧ୍ୟରୁ    ଏକମାତ୍ର କନ୍ୟା
    ଦେଖିବୁଁ ତୋହର ମୁଖ ,

ଯୋଗ୍ୟପାତ୍ରେ ତୋର　　ହେଲେ ସମ୍ମିଳନ
　　ପାସୋରିବୁ ସବୁ ଦୁଃଖ ।
ରାଜ୍ୟ ଲଭିବାକୁ　　ଅଭାଗ୍ୟରେ ବାଳା
　　କୋଳରେ ନାହିଁ ନନ୍ଦନ ,
ଯାମାତା ସହିତେ　　ପରମ ସୁଖରେ
　　ଭୁଞ୍ଜିବ ଐଶ୍ୱର୍ଯ୍ୟ , ଧନ ।
ସ୍ୱାମୀକୁଳେ ଜନ୍ମି　　ଗାର୍ହସ୍ଥ୍ୟ ଧରମ
　　ଲଙ୍ଘିବାର ଅନୁଚିତ ,
ସୁତ , ପାଇ ନାହିଁ —　ତଳେ ସ୍ୱର୍ଗସୁଖ
　　ଲଭିବେରୁ ଉଲ୍ଲସିତ " ।
ଶୁଣି ଏହିକଥା　　ଅମ୍ଳାନ ବଦନେ
　　କଲେ ଯେମା ଅସ୍ୱୀକାର ,
କ୍ରୋଧେ ନରନାଥ　　ହେଲେ ଜର୍ଜରିତ
　　କଲେ ସତନ୍ତ୍ର ଅଙ୍କାର ।
ରାଜପୁର ମଧ୍ୟୁ　　କରିଦେଲେ ଦୂର
　　ଖର୍ଣ୍ଣିବେ ଦେଲେ ରଖି ,
ପରିଚର୍ଯ୍ୟା ପାଇଁ　　ରହିଲ କେବଳ
　　ସେ କନକଲତା ସଖୀ ।
ହେଲେ ହେଁ ଏପରି　　କଠିନ ବ୍ୟବସ୍ଥା
　　ନ ମଣିଲା ଯେମା ଦୁଃଖ ,
ରାଜ ଅନ୍ତଃପୁରୁ　　ସେ ଜର୍ଜ୍ଜର ସ୍ଥାନ
　　ମଣିଲା ପରମ ସୁଖ ।
ଦିବ୍ୟ ରାଜପୁରୀ　　ଯୋଗ୍ୟ ବାସସ୍ଥାନ
　　ନୁହଇ ଯେ ଲଳନାର ,

ତାକୁ ଜୀର୍ଣ୍ଣସୌଧେ   ଦେଲୁଟି ରଖାଇ
  ବଧି ଥିବ ତୋବଗ୍ରର । !

—:o:—

## ଦ୍ୱିତୀୟସର୍ଗ ।

ବରଦ ଦେଶରେ   ଶିବଙ୍କ ନାମେ
  ଥିଲ ସ୍ଥାନ ମନୋହର ,
ସେ କ୍ଷେତ୍ରରେ ବାସ   କରୁଥିଲେ ପାପ–
  ହାରୀ ଗଉରୀ, ଶଙ୍କର ।
କୁନ୍ଦ ଅବଦାତ   ଉତ୍ତୁଙ୍ଗ ପ୍ରାସାଦ
  ଶିରେ ସ୍ୱର୍ଣ୍ଣ କୁମ୍ଭଧର ,
ଦଶଇ କାଞ୍ଚନ   ଶୃଙ୍ଗଧାରୀ , ଗୌରୀ —
  ଗୁରୁ ହିମାଳୟ ପରି ।
ଧବଳ ଚପଳ   ଚୂଡେ ଉଡେ ସେକ୍ଷି
  ପାପିଙ୍କି ଡରେ ଜ୍ଞାପନ ?
ଆସସର୍ବେ ପୂର୍ଣ୍ଣ —   କ୍ଷେତ୍ରେ ପାପପଙ୍କ
  ହୁଦୁଟିବ ପ୍ରକ୍ଷାଳନ ।
ଶିବ ଚତୁର୍ଦ୍ଦଶୀ —   ମେଳା ହେଉ ଅଛି
  ସେ ସ୍ଥାନରେ ମାଘମାସେ ,
ନାନାସ୍ଥାନ ଲୋକ   ରୁଣ୍ଡ ହୋଇଛନ୍ତି
  ଶିବ ଦରଶନ ଆଶେ ।
ବେଳେ ବେଳେ ତହିଁ   ବରଦ – ଭୂପତି
  କରନ୍ତି ବସ୍ତିକମାନ ,
ସ୍ୱଚ୍ଛ-ବାସ-ଯୋଗ୍ୟ   ସୁନ୍ଦର ଭବନ
  କରାଇଛନ୍ତି ନିର୍ମାଣ ।

ପୂର୍ବ-ପାର୍ଶ୍ୱ ଦେଶେ    ଥିଲା ବିରାଜିତ
ଉଦ୍ୟାନ ମନୋମୋହନ,
ଫଳ ପୁଷ୍ପଭରେ    ତରୁ ଅବନତ
ମହତ ଶିର ଯେସନ ।
ନାନାଜାତି ଫୁଲ    ହୋଇ ବିକଶିତ
ଚହଟୁଛି ଗନ୍ଧ ବାସ,
ସଜ୍ଜନ ଗଣର    କୀରତି ଯେସନ
ହୁଏ ଦିଗେ ଦିଗେ ପ୍ରକାଶ ।
ତାମ୍ବୂଲ ବଲ୍ଲରୀ    ଗୁବାକ ତରୁକୁ
କରୁଛି ରଙ୍ଗେ ବେଷ୍ଟନ,
ଚନ୍ଦନ ତରୁକୁ    ଏଲା ଲବଙ୍ଗାଦି
କରୁଛନ୍ତି ଆଲିଙ୍ଗନ ।
ସପ୍ତପର୍ଣ୍ଣ ଶ୍ରେଣୀ    ତମାଲ ପନସ
ଆସ୍ତରଣ ବିନିର୍ମ୍ମିତ,
ଯୋଗ୍ୟ ସ୍ଥାନମଣି    କୁରୁବକମଥୁ
ଅତ୍ୟନ୍ତ ଲୀଳାସ୍ପିତ ।
ଜଳ ସେଚନର    ବଶେ ଆଲବାଳ
ଥାଏ ଆର୍ଦ୍ର ଅବିରତ,
ଘୋଷା କୃଷ୍ଣସାର —— ଚମୂ ଶୋଇଛନ୍ତି
ଆନନ୍ଦେ ରୋମନ୍ଥେ ରତ ।
ପାଳିତ ହରିଣ    ହରିଣୀ ସକଳ
କାହିଁ ବା ରତ କୁର୍ଦ୍ଦନେ,
କାହିଁ ତରୁଶାଖେ    ମୟୂର ମୟୂରୀ
ରତ ଗାନ କଣ୍ଠସ୍ୱନେ ।

କାହିଁ କସ୍ତୁରିକା ସ୍ନେହଭରେ କରେ
ବତ୍ସର ଗାତ୍ର ଲେହନ ,
କାହିଁବା ଶଶକ — ପତ୍ନୀ , ତନୟକୁ
କରୁଅଛି ପାନସ୍ତନ୍ୟ ।
ତହିଁ ନାନାବିଧ ଜୀବ ଜନ୍ତୁଙ୍କର
ମୂରତି ଛନ୍ତି ନିର୍ମ୍ମିଣି ,
ଲୌହକୁ ଚୁମ୍ବକ ପରାୟେ ଦର୍ଶକ
ମାନସ ନିଅନ୍ତି ଟାଣି ।
ସେ ଉଦ୍ୟାନମଧ୍ୟେ ସ୍ୱଛେ ରମ୍ୟସର
ଜଳ ସ୍ୱଚ୍ଛ ନୀଳାକାର ,
ତୀର-ତରୁ, ଗୁଳ୍ମ — ଛବି ଛୁଦେବନ୍ତ
ଦେଖାଏ ଭାବ ଉଦାର ।
କୁମୁଦ କହ୍ଲାର ତାମରସ ପୁଷ୍ପେ
ହୋଇଅଛି ସୁଶୋଭିତ ,
ହଂସ , ହଂସଗଣ କାରଣ୍ଡବ ରବେ
ହୁଏସଦା ମୁଖରିତ ।
ତହିଁ ଚକ୍ରବାକ ଦମ୍ପତି ଆନନ୍ଦେ
ମତ୍ତପ୍ରେମ ଆଲିଙ୍ଗନେ ,
କାଦମ୍ବ ଦମ୍ପତି ମୃଦୁ ଲହରୀରେ
ଦୋଳୁଥାନ୍ତି ତୋଷମନେ ।
ଶିବକ୍ଷେତ୍ରେ ଚମ୍ପା — ଗୌରୀ ଚମ୍ପାବତୀ
ଶରଚନ୍ଦ୍ର ନିଭାନନୀ ,
ବିହଙ୍ଗି । ଅଙ୍ଗି ଏଙ୍କତେ ଅଛନ୍ତି
କନକଲତା ସଙ୍ଗିନୀ ।

ଉତ୍ସବ ଦର୍ଶନେ ଲାଳସରେ ଏଣେ
କୁମାର ମୀନକେତନ ,
ମିତ୍ର , ମିତ୍ରଭ୍ରାତୃ ସହିତେ ସାନନ୍ଦେ
କରିଛନ୍ତି ଆଗମନ ।
ରାଜସୁତା ସଖି — ସଙ୍ଗେ ଶିବାଳୟେ
ଏକଦିନ ଥିଲେ ଯାଇ ,
ଦଇବେ ସେକାଳେ ନୃପସୁତ ଗଲେ
ଶିବ ଦରଶନ ପାଇଁ ।
ହେଲା ରାଜସୁତା ରାଜ ସୁତଙ୍କର
ଚାରି ଚକ୍ଷୁର ମିଳନ ,
ବେନଙ୍କର ରୂପ -- ରାଶି ଦେଖିମୁଗ୍ଧ--
ହେଲା ବେନଙ୍କ ନୟନ ।
ନିବାତ ନିଷ୍କମ୍ପ ହ୍ରଦେ ଯଥାଜଳ
ତଥା ବେନଏ ସ୍ତମ୍ଭିତ ,
କର୍ତ୍ତବ୍ୟ ବିମୂଢ଼ - ହେଲେ , ବେନପରେ
ଲୋଲୁପ ବେନଙ୍କ ଚିତ୍ତ ।
ଦେହୁଁ ଶ୍ରମବାରି ସ୍ରବିଲା ବେନଙ୍କ
ଗିରିଦେହୁ ଯଥା ନିର୍ଝର ,
କଦମ୍ବ କୁସୁମ ସମ ଅଙ୍କୁରିତ
ହେଲା ବେନି କଳେବର ।
କୁମାରଙ୍କ ମିତ୍ର ଜେମା-ସହଚରୀ
ଦେଖିଲେ ଏସବୁ ଘଟଣା ,
ବେନଙ୍କର ମନ -- କଥା ନରହିଲା
ତାହାଙ୍କୁ କିଛି ଅଜଣା ।

ବିବାହ ଉତ୍ସବେ　　　ନିଜ ନିଜ ଘର
　　ଦ୍ୱାରକୁ ସଂଶୋଧନ-
ଚେଷ୍ଟା କଲେ ଯେତେ　　　ତହିଁ ବଳିହେଲା
　　ଦୁନ୍ଦୁଭିର ବିଜ୍ଞାପନ ।
ବନ୍ଧୁ କଟକ୍ଷ କରି　　　କଥଞ୍ଚିତ ତୃପ୍ତେ
　　ଘର ବିକାର ସ୍ମୃନ ,
ଶିବାଳୟ୍ରୁ ଯାଇ　　　ନିଜ ନିଜ ବାସେ
　　ପ୍ରବେଶିଲେ ଦେବଜନ ।
ମିତ୍ର, ମିତ୍ରଭାନୁ　　　ଡକାଇ ନାଉଟେ
　　ରହିଲେ ନୃପ କୁମାର ,
ଅଶନ, ଭୂଷଣ　　　ସବୁ ତାଙ୍କପ୍ରତି
　　ହେଲା ଶରଣ ପ୍ରକାର ।
ଅସିଥିଲେ ଯୁବା　　　ଶିବକ୍ଷେତ୍ରେ ନାନା
　　ଆମୋଦ ପ୍ରମୋଦ ପାଇଁ ,
ସେ ସୁଖ ଛଡ଼ାଇ　　　ବିରହ ସାଗରେ
　　ଦେଲା ବାଳା ନିମଜ୍ଜାଇ !!
ଏତେ ଦିନ ଯାଏ　　　ତାଙ୍କଠାରେ ମନ
　　ଥିଲା ବଚସ୍କର ହୋଇ ,
ଖଳସୁତା ପାଶେ　　　ଗଲାଗଲା ସେଠି
　　ଅଙ୍ଗ ହୋଇ ପ୍ରଭୁଦ୍ରୋହୀ ।
ଯେଦିନେ ରହିଁଲେ　　　ସେଦିନେ ନୃପନେ
　　କଲେ ନୃତ୍ୟ ରଙ୍ଗବାଳା ,
ସ୍ୱାନ୍ତବାଳା ନାମ　　　ନିରତେ ଜପିଲେ
　　କରିଯୁବା ଜପମାଳା ।

କହନ୍ତ ଗଦ୍ଗଦେ  "ଅହେ ପ୍ରାଣମିତ
ଆଜିମୋର ବଡଭାଗ୍ୟ ,
ଯେ ଶୋଭା ସମ୍ପଦ  ଦେଖି ଜୀବନକୁ
ମଣେଲି ସିନା ମୁଁ ଶ୍ଳାଘ୍ୟ ।
ଅନ୍ୟକଥା ଥାଉ  ରମଣି ମଣିକୁ
ଦେଖିଲେ ସୁର ସୁନ୍ଦରୀ ,
ନିଜ-ରୂପ-ଗର୍ବେ  ଧିକ୍କାର ଦେଇସେ
ହେବେ ଶ୍ରୀପଦେ କିଙ୍କରୀ ।
ସ୍ୱଭାବେ ରୂପସୀ  ତହିଁପରେ କରିଛି
ଯଉବନ ଅଧିକାର ,
ତହିଁପରେ ପୁଣି —  ଭୂଷା ମନଲୋଭେ
ସୀମନ୍ତେ ବର୍ତ୍ତଣୀ-ପ୍ରକାର ।
ମତ କେଡେ ଶୋଭା  କରୁଛି ପ୍ରକଟ
ଅବଲାର ଚିରୁମୁଖ ,
ନଥିଲେ କଳଙ୍କ  ତୁଲ୍ୟ ତାର ସିନା
ହିଅନ୍ତା ସୁଧା ମୟୂଖ ।
ମାଙ୍ଗ ଭାଗେ ମଞ୍ଜୁ —  ମଥାମଣି ଶଞ୍ଜି—
ଅଛି ମଣି-ରତ୍ନ-ହାର ,
ଓଷ-ମୋଷା-ଭୂଷା  ଲଲାଟ ଉପରେ
କିବା ସେ ପ୍ରଭା ତାହାର ।
ଦେଖିବାରେ ଅସେ  ଯେ ମାଙ୍ଗ ଭାଗର
ମଧ୍ୟରେ ସିନ୍ଦୂର ଟୋର ,
ମୁଖ ଚନ୍ଦ୍ର ପଛୁ  ଧରିଅଛି ସନ୍ଧ୍ୟା
ଲୋଲଜିହ୍ୱା କିସେ ତାର ?

ନୟନ ନଳୀନୁ　　　ମଧୁ ଆହରିବା—
　　ଆଶାରେ ହୋଇ ଚଞ୍ଚଳ ,
ଅଳକା ଛଳରେ　　　ବେଢ଼ି ଅଛନ୍ତି କି
　　ମଧୁ ମକ୍ଷିକା ସକଳ ? ।
ବେନି ଶ୍ରୁତିମୂଳେ　　　ହୀରା ଅବତଂସ
　　ଚୁମ୍ବୁଛି ଗଣ୍ଡ ମଣ୍ଡଳ ,
ପୂର୍ବେ କି ସୁକୃତ　　　ଅର୍ଜିଥିଲା ଅଙ୍ଗ
　　ଭୁଞ୍ଜୁଛି ତାହାର ଫଳ ?
ଲଲାଟ ଉପରେ　　　ସିନ୍ଦୂରର ବିନ୍ଦୁ
　　ଦିଶଇ କେଡେ ଶୋଭନ ,
ଗୋଧୂଳି ମସ୍ତକ　　　ଉପରେ ଯେସନ
　　ଶୋଭେ ତାରକା ରତନ ।
ନୟନ ନୁହଇ　　　ହ୍ରଦାଟେ ଅଟଇ
　　ପ୍ରଫୁଲ୍ଲ ବେନି କମଳ ,
ମକରନ୍ଦ ଲୋଭେ　　　ଡୋଳାଛଳେ ଲଢି
　　ଅଛନ୍ତି ବେନି ଭ୍ରମର ।
ଯୁବା ଜନ-ମନ　—　ମୃଗ ବନ୍ଧିବାକୁ
　　ପାଞ୍ଚିଛି ମନେ ଅତନୁ ?
ଥୋଇଅଛି ଯତ୍ନେ　　　ନୟନ—ଅଞ୍ଜନ-
　　ରଞ୍ଜିତ ଭ୍ରୂଲତା ଧନୁ ।
ଅଟେ କଇତବ　　　ତୀକ୍ଷ୍ଣ ଦୃଷ୍ଟିପାତ
　　କରେନାହା ଯୋଷାବର ,
ଯୁବା ମାରିବାକୁ　　　ହେଉଛି ନିର୍ଗତ
　　ସଙ୍କେତେ ସ୍ମର ଶର ? ।

ଯୁବା-ଚିତ୍ତ-ଶୁକ ବଳେ ବାନ୍ଧିନେବ
ଯାହାଙ୍କ ମୀନକେତନ ,
ନାକେ ନୋଥ-ପାଶ ବସାଇଛୁ ଦେଇ --
ଓଷ୍ଠ-ବିମ୍ବ ପ୍ରଲୋଭନ ।
ସେ ବାଳା ମଣିର ଶୁଭ୍ର ଦନ୍ତପନ୍ତି
ହୃଦେ ଜନ୍ମାଏ ଆହ୍ଲାଦ ,
କହନ୍ତି ତାପସେ ଅଛଇ ଶିଖର
ମାତ୍ର ସେ ମିଥ୍ୟା ପ୍ରବାଦ ।
ରମଣୀ ମଣିର ସୁନ୍ଦର ଅଧର
ଦେଖେକି ରକ୍ତିମା ମୟ ,
ନବ କିଶଳୟ ପ୍ରବାଳ ଲତା
ନୋହନ୍ତି ତାର ସାଦୃଶ୍ୟ ।
ମତ୍ତ କାମିନୀର ମିତ ଭୃଙ୍ଗବେଣୀ
ଦେଖେକେତେ ସୁଲକ୍ଷଣ ,
ହୁଅନ୍ତା ତାପସ — ମୃଣାଳ, ଯଦ୍ୟପି
ନୋହିଥାନ୍ତା କଣ୍ଟକିତ ।
କରଯୁଗେ ଯାହା ଶୋଭୁଛି ବାଳାର
ସେ ନୁହେ ମର୍କତ ଚୁଡ଼ି ,
ଚମ୍ପାଫୁଲ ଗ୍ରୀବେ ମଧୁଲୋଭେ ଭୃଙ୍ଗ
ଗଣ ରହିଅଛନ୍ତି ଭିଡ଼ି ।
ବୃଥା ଗର୍ବ କରି — କଳଭ କରୁଛି
ମିଛି ହେମକୁମ୍ଭ ଘେନି ,
ସମେତ ତାହାର ଅଛି ଏ ରମଣୀ—
ମଣିକୁମ୍ଭଦ୍ୱୟ ଘେନି ।

ପୂର୍ବେ ମୁକ୍ତାମାଳା ପିନ୍ଧିଥିଲେ ବୋଲି
ସୂଚୀ-ମୁଖ-ବଦ୍ଧ ଦୁଃଖ ,
ଲଭୁଛନ୍ତି ତାର — ଫଳ , ବାଳାସ୍ତନ-
ଅଙ୍କୁରେ ନୂତନ ସୁଖ ।
ଦେଖିଲି ବେଳରୁ ଚେତକୀ ଗୋଲର
କ୍ଷୀଣ କଟୀ ମନୋହର ,
କଣ୍ଠୀରବ କଟୀ ସୂକ୍ଷ୍ମ , ଶୋଭାରୁ ମୋ
ଯାଉଛନ୍ତି ଭୁଲି ଅଦଳ ।
କଦଳୀ କଦଳୀ କରଭ କରଭ
କରକର କରିବାର ,
ହିଭୁନେନେ ନାହିଁ ହେଯାକୁ ତୁଳନା
ସେ ବାଳା ଉରୁ ସଙ୍କର ।
ଘୋଷା ଭୂଜଙ୍ଗର କଟୀର କିଙ୍କିଣୀ
ଜରେଯାହା ଝଣ କିଣି ,
ବ୍ୟାକୁଳିତାହା , ବୋଲେ ରସିକ ହୃଦୟ
ନୂପୁରନେ ନେବ କିଣି ।
ସେ ବାଳାମଣିର ଚରଣ ସମାନ
ହେବାକୁ କି ଶତଦଳ ,
ଦୁଷ୍କର ତପସ୍ୟା କରୁଛି ସାଧନା
ହୋଇଅଛି ଗଳ-ଜଳ ।
ଶୁଣି ମଞ୍ଜୀର ଚରଣ ହଂସକ
ସିଞ୍ଜିତ ମଧୁର ସ୍ୱନ ,
ହଂସ ସ୍ୱନଙ୍କାନେ ପଛେ ପଛେ ତାର
କରନ୍ତି କରେ ଗମନ ।

କନକ କଳସ          କେତକୀ ଦଳସ-
    ଗଉରାଙ୍ଗି ଲଲନାର ,
ଶ୍ରୀପଦେ ଅଳତା          ଦଶେ ବାଳାତପେ
    ସ୍ଥଳ କମଳ ପ୍ରକାର ।
ନବମାଳୀ ତାହା          କରଛ ସଦୃଶ
    ଚମ୍ପକ ଅଙ୍ଗୁଳି ସମ ,
କରତଳ ସମ          ଅତେସେନା ମିତ
    କୋକନଦ ମନୋରମ ।
ଜଗତ ମୋହିନୀ          ସେ ଯୋଷା ମଣିର
    ଅମୃତ ଅଛି ବଚନେ ,
ସୁଧା କିରଣରେ          କିପାଁ ଲୋଡୁଥାନ୍ତୁ
    ବୃଥାଭ୍ରାନ୍ତ ନରଗଣେ ।
ଅପଘନ କାନ୍ତି          ଶୋଭେ ବାରୁଜାଣୀ
    ଜମ୍ବୁନଦର କନକ ,
ତପନ କାନ୍ତି          ତମାଲ ସ୍ତୋମର
    ବର କୁନ୍ତଳ ମେଚକ ।
ବୀଣାଧ୍ୱନୀ ଶୁଣୁ          ତହୁଁ ବଳବାନ
    କରେ ସିନା ବନପ୍ରିୟ ,
ଏସକଳେ ବାଳା — କଣ୍ଠୁ ଜିଣିଅଛି
    କଣ୍ଠେ ଢାଳୁଛି ଅମିୟ ।
ନୀଳାମ୍ବରୀ ରଙ୍ଗ — ଶାଢ଼ି ହେମାଙ୍ଗିର
    ଜଡ ଯାଇଅଛି ଅଙ୍ଗେ ,
ନୀଳ ରତ୍ନାକର          ହିଲ୍ଲୋଳେ ଚନ୍ଦ୍ରିକା
    ଖେଳାକି କରୁଛି ରଙ୍ଗେ ?

ଯାଭ୍ରଗ୍ୱ ଗଗନେ     ଉଇଁବ ସେ ବାଳା

ପଦ୍ମ ଷଟ୍‌ପଦୀ ନାୟିକ ;

ଯୁବା ସଂସାରରେ     ଏକାପିନା ମିତ

ଜୀବନ ତାର ସାର୍ଥକ ।

ମାତ୍ର ମୋହପଣ     ଯୁବା ବଲାଇବା

ସେ ବାଳାମଣିରେ ମନ ;

ନଷ୍ଟେ ହାସ୍ୟାସ୍ପଦ     ବାମନ ପକ୍ଷରେ

ଚନ୍ଦ୍ର ସ୍ପର୍ଶ ଯେମନ ।

ପରନ୍ତୁ ରତନ     ଲୁଭ ରଙ୍କପକ୍ଷେ

ନୁହଇତ ସମ୍ଭାବିତ ;

ନିମ୍ନଗାମୀ ନୀର -- ଧାଉ କିପାଁମନ

ବୃଥା ତା ଦଗେ ଧାନ୍ତ ।

ପ୍ରେମ ବହ୍ନିଲରେ     ପଡ଼ି କୁମାର

ସବୁବେଳେ ବାଳା କଥା ,

କହୁଥାନ୍ତି ମିତ     ଅରତେ ସାଗ୍ରହେ

କହି ଅହା ମନୋବ୍ୟଥା ।

ଶୟନେ , ସ୍ୱପନେ ,     ଅଶନେ , ନୟନେ--

ନ ଜାଣା କଲେ ନର୍ତ୍ତନ ,

କ୍ଷଣକେ ମତକୁ     ଦେଲୁଡୁ ଫେରାଇ

ପ୍ରୀତଚୋର ବଳଧନ୍ୟ ! !

—:○:—

## ଚତୁର୍ଥ ସର୍ଗ ।

ଏଣେ ରାଜବାଳା     ବାତ୍ୟନରେ ବସି

କନକ ଲତା ସଦୃଶ ,

ପ୍ରେମ ଗଦ୍‌ଗଦ କହେ "ସଖି ଆଜ
ଦେଖିଲି କି ଅଚମ୍ଭିତ ।
ଶାସ୍ତ୍ରେ ଅଛୁ ଶୁଣି ମୀନକେତନର
ଅଟେ ମନୋହର ତନୁ,
ତାହୁଁ ବଳ ଶୋଭା କିରୂପେ ଦେଖିଲି
ପାସୋରି ନୟାଏ ମନୁ ।
ଏସନ ବଧନ ମୋର ସହଚରୀ
କେବେ ମୁଁ ତ ଦେଖିନାହିଁ,
ନୟନ ଭିତରେ ଦୂରୁ ମୋର ହୃଦ-
ରତନ ନେଲା ଦେଖାଇ ।
ମୋର ଜାଣିବାର -- ପଦେ ପ୍ରାଣବଳି
ଦେବାଲାଗି ଦାୟୀ ପୁଣି,
ଲଜାନ୍ୱିତା ମୁହିଁ ଦେଖିବାର ଥାଉ
କହିବି କେବେ ଅଳ୍ପ ପୁଣି ? ।
ଯେତେବେଳେ ଚାହିଁଲେ ସେତେବେଳେ ସେରୂପ
ମୋ ମନେ ସ୍ଫୁରୁଛି ନିତ୍ୟ,
ଏ ଘଟଣାଯୋଗୁଁ ଜାଣ ମୋ ହୃଦର
ହେଉଅଛି କୁତ୍ସିତ ନୃତ୍ୟ ।
ଜାଣି ପାରୁନାହିଁ ଏସନ ବଧନ-
ଘଟଣା କିପାଇଁ ହେଲା,
ଇନ୍ଦୁ କଳଙ୍କର ପରାଭୂତେ ସଖି
କୁହୁକ ଲାଗିଲା ମେଳା ।
ବଷସମ ମୋତେ ଲାଗୁଛିରେ ସଖି
ସଦା ଅଶନ, ଭୂଷଣ,

ଶୁଣିଲେ ଅତୃପ୍ତ ପଦ୍ମପୁରେ ଯୁବା
ଫେଟାଇ ନେତ୍ର ମୋହନ ।
ତାର ଅଙ୍କ-ଲକ୍ଷ୍ମୀ — ରୂପେ ଯେ ଶୋଭିବ
ସେବଡ ଭାଗ୍ୟଶାଳିନୀ ,
ଭୂତଳେ ସେବାଳା ନିଶ୍ଚେରେ ସଙ୍ଗିନି
ସାକ୍ଷାତ ଶଚୀ ରୂପିଣୀ ।
ମୋପରି ରମଣୀ ତାକୁ ଲଭିବାର
ଅଟଇ ସିନା ଦୁରାଶା ,
ମରୁଭୂମି ମଧ୍ୟେ ବାଲି ଶୈବଳେରେ
ମେଣ୍ଟଇ କାହିଁ ପିପାସା ?
କି ବୁଦ୍ଧି କରିବ କାହାରେ ସଙ୍ଗିନ
କିପରି ତାକୁ ଲଭିବ ?
ତାକୁ ତ୍ରିଭୁବନେ ପାଇ ସତେ ମୋର
ଦୁଃଖ-ଦୁଃଖ ବାଞ୍ଛିବ ?
ଦୁର୍ଲ୍ଲଭ ଜନରେ ଅନୁରକ୍ତ ସଖି
ହୋଇଛି ପ୍ରାଣ ମୋହର ,
ଅସ୍ତା ପରବଶ ଚାହିଁ ପରେ ପୁଣି
ଲଜ୍ଜାମୋର ଗୁରୁତର ।
ପ୍ରିୟସଖି ମୁହିଁ ବଦ୍ଧ ପ୍ରେମେ ଗୋ
କରୁଅଛୁ ଦରଶନ ,
ଏ ସଂସାରେ ମୋର କେବଳ ମରଣ
ଏକମାତ୍ର ଗୋ ଶରଣ ” ।
ଶୁଣି ପ୍ରେମବାଣୀ କହଇ, କନକ-
-ଲତା "ନ କର ଭାବନା ,

ବୃଥା ଭାଳୁଣିରେ କାହାର କି ସତ୍ୱ
ଯାଉଛି ମନୋବେଦନା ।
ତାଙ୍କୁ ଲଭିବାଙ୍କୁ ଉପାୟ ରଚନା
ଯେମନ୍ତେ ତାଙ୍କର ମନ,
ଚୁମ୍ବକେ ଲୌହ — ପ୍ରାପ୍ତ ଭୂମ୍ବ ରୂପେ
ହେବ ସତ୍ୱ ଆକର୍ଷଣ ।
ତରତରେ କାର୍ଯ୍ୟ ନୁହଇ ସଫଳ
କାଲମୃରେ ହୁଏସିଦ୍ଧି,
ଧୈର୍ଯ୍ୟ ଧରି ରହ ନୁହଁଭୁ ଅଧୀର
ଚଲାପଙ୍କି ବାଲାବନ୍ଧି ।
ଏଥେସେ ସ୍ୱାଧୀନ ଅଛୁ ବଡପଣ
ମ୍ଭାଭିବେ ନବ ଯୌବନ,
ଏସବ ସୁବିଧା ପାଇଅଛୁ ଯହିଁ
ରଖି ଦେବକି ମଦନ ? ”
ଏହିପରି ନାନା ପ୍ରବୋଧ ବଚନେ
ବୁଝାଇଲ ସହଚରୀ,
ମାତ୍ର ହେଲବ୍ୟର୍ଥ ନଦୀ ବନ୍ୟାସ୍ରୋତେ
ସୈକତ ବନ୍ଧନ ପରି ।
ସଙ୍ଗୀ ଗଲରୁ ଯୋଗାନନ୍ଦେ ଯୁବା
ନର୍ତ୍ତନ କଲା କେବଳ,
ଭୂଷାନଳ ପ୍ରାପ୍ତ ଥିଲାଯା ପ୍ରଚ୍ଛନ୍ନ
ଜ୍ୱଳିଲା ସେ ଦୁଃଖାନଳ ।
ଦୁଃସ୍ୱପନ ଜଣ ମେଟକ୍ଲେ କୃଶାଙ୍ଗୀ
ହୁଅଇ ନିଦ୍ରିତା ସୁଖେ,

ଅଜିସେ ତାହାକୁ　　ହେଲା କଣ୍ଟକିତ
　ରହୁଛି ତାପରେ ଦୁଃଖେ ।
କ୍ଷଣକେ ଉଠଇ　　କ୍ଷଣକେ ବସଇ
　ସନ୍ନିପାତ ରୋଗୀପରି ,
ଯୁଗ ପ୍ରାୟ ତାକୁ　　ହେଉଅଛି ଦୀର୍ଘ
　ଦୁଃଖେ ଅଳ୍ପ ବିଭାବରୀ ।
ବେଳେ ବେଳେ ତନ୍ଦ୍ରା — ଦେବୀ ଅଧିକାର
　କରନ୍ତି ନେତ୍ରେ କିଞ୍ଚିତେ ,
ମାନସ କି ଭାବନା　　ମନେହୁଏ ଉଦେ
　ଚମକି ବସେ ଭୂମିତେ ।
ସ୍ୱପନେ ଯୁବାର　　ଗଣ୍ଡରେ ଚୁମ୍ବନ
　ଦେବାପାଇଁ ଲୋଳମୁଖ ,
କରିବା କାଳରେ　　ଜାଗି ଉଠିଲା
　ମନେ ଲଭେ ଗୁରୁ ଦୁଃଖ ।
ସ୍ୱପ୍ନେ ବସେ ମାନେ　　ଯୁବାକରେ ଚିତ୍ତେ
　ଚିବୁକ ଧରି ତାହାର ,
ସେ କୌତୁକ ତାର　　କରଇ ଦୂର
　ଜାଗର ହୋଇ ଭଗାଇ ।
ସ୍ୱପନେ ଯୁବାକୁ　　ଲଭି, ବେନିବାହୁ
　ଆଶ୍ଳେଷ ଅଶେଷ ପ୍ରକାରେ ,
ଯାଗିଦେଖେ ବାଳା　　ଶୂନ୍ୟକୁ ଭିଡ଼ୁଛି
　ଭାସେ ଦୁଃଖ ପାରାବାରେ ।
କେତେବେଳେ ନିଦ — ନୂପୁର ଶବଦ
　ବିଭ୍ରମେ କରେ ଶ୍ରବଣ ,

ଯୁବା ଅଛୁଅଛନ୍ତି ମନେ ଭାଳି ହର୍ଷେ
ତେଜରେ ଯୌବନରେ ତା କାନ୍ତି ।
ଅଶାନ୍ତିର ହୃଦେ ଖେଦଶ୍ରୁ ଦୂରଯାଇ
ନହେଁ ଉପୃଷ୍ଟ ନନ୍ଦନେ ,
ନୈରାଶ୍ୟେ ବାନ୍ଧୁଥ ଶଯ୍ୟାପରେ ପୁଣି
ବସିଛ ମନ ବିଧାନ୍ତେ ।
ଏ ଅନ୍ତେ ପ୍ରାଙ୍ଗଣେ ତାଲ୍ ଶଯ୍ୟାତେଳି
କହେ "ହେ ଶୀତ ସମୀର ,
କଳଙ୍କି ହେତୁରୁ ଅମୃତ ଦାଣ୍ଡ
ଦହନ୍ତ୍ର ମୋର ଶରୀର ।
ଭୁଜଙ୍ଗ ସଂସର୍ଗୀ ବୋଲି ହେଲା ହେଲା
ମୁଞ୍ଚୁ ଅଛୁ ଘନସାର ,
ହୋଇଥିଲ ଜନେ ଦଗ୍ଧ ବୋଲି ମୋତେ
ଦହନ କରୁଛୁ ମାର ।
"ଜଗତ ଜୀବନ" ନାମ ବାନ୍ଧି କିପାଁ
ହରୁଛୁ ମୋର ଜୀବନ ,
ତୁମ୍ଭର ପରସ୍ପ ମହନ୍ତ ପଥରେ
ଏକି ଭଲ ଆଚରଣ ? "
ଚକୋର ଚକୋରୀ ଜ୍ୟୋତ୍ସ୍ନାମୃତ ପିଇ
କଲେ ସଙ୍ଗୀତ ମଧୁର ,
ଶୁଣି ରାଜବାଳା ଭାଷିଲ ଏମନ୍ତ
ଦୁଃଖରେ ହୋଇ ବଧୁର ।
"ପକ୍ଷି କୁଳେ ଜନ୍ମ ହୋଇରେ ନିକ୍ଷତ
ତୁ ମ୍ଭ ବଡ ଭାଗ୍ୟବାନ ,

ଗୀତ କୁଟଳଜନ୍ମ ଧିକ, ମୋହପଡ଼ି
ନାହିଁ ଅଭାଗିନୀ ଅନ୍ତ ।
ପ୍ରୀତି ରସେ ଭାସି ଭ୍ରମ୍ମି ଆନନ୍ଦରେ
ଭୁଞ୍ଜୁଥିଲୁ ସୁଖ ଅମୂଲ୍ୟ ,
ସେ ସୁଖରୁ ମୁହିଁ ବଞ୍ଚିତା , କାହିଁକି
ଅଭାଗିନୀ ମୋହଭୁଲ୍ୟ ।
ସାଜହ ସୁଖ — ସ୍ୱର୍ଗ ଭବେଶ୍ରେଷ୍ଠ
ଗର୍ବେ ପାଞ୍ଚୁଥିଲ ଯାହା ।
ପ୍ରୀତି ସୂତ୍ରଆଗେ ତୁଚ୍ଛ ତୁଚ୍ଛତର
ଏବେ ଘଟିଲା ତାହା " ।
କହେ ବୈରାଗୀ ଚନ୍ଦ୍ରକୁ ଅନାଇ
"ତୋହର ଶୀତ କିରଣ ।
ମଣେ ଅଥର୍ବ ଅନଳ ସମାନ
ଯୋଗୀଙ୍କ କରେ ଦହନ ।
ନହେଲୁ ତୁ ତୃପ୍ତି କହିଁରେ ଦୁରନ୍ତ
ମହାସାଗର ମନ୍ଥନେ ,
ନହେଲୁ ଦହନ ମଦନ ବଜ୍ରଦ୍ରୀ-
ନୟନର ହୁତାଶନେ ,
ବଞ୍ଚିଲୁ କ୍ଷଣେ ରାହୁର ବଦନେ
ମୋହ ଯାହା ଘଟିଲା ,
ଧିକ ବନ୍ଧୁ ଧର୍ମ ଦ୍ୱିଜାତ୍ମା ସକଳେ
ହୃଦୟ ବାଧ [illegible] ।
ହୀନ କେତକ ଘଟେତୁମ୍ଭେ କରେ
ଧରିଅଛି ଫୁଲ ଧନୁ ,

ଅଶନି ସମାନ କରୁଛୁ ପୀଡନ
ତେବେ କିପାଁ ମୋର ତନୁ ।
ଜାଣିଲି ୨ ସୌଭାଗ୍ୟେ ସର୍ବେ
ହୁଅନ୍ତି ସୁଖ କାରଣ ,
ଅଭାଗ୍ୟ କାଳରେ ସେ ସର୍ବେ କରନ୍ତି
ପୁଣି ଶତ୍ରୁ ଆଚରଣ
ଅହା ବିଶ୍ୱଧର୍ମ୍ମ ପ୍ରବଳେ ସହାୟ
ଦୁର୍ବଳ ଜନେ ପୀଡନ ,
ଗୃହ ଦଗ୍ଧେ କର ଅଗ୍ନିର ସାହାଯ୍ୟ
କରାଇଣ ଦୀର୍ଘ ପବନ " ।
ସୂର୍ଯ୍ୟମୁଖୀ ପୁଷ୍ପେ ଚୁମ୍ବି କହେ ବାଳା
"ତୁରୁ କିପାଁ ମୋହୋପରି
ନୈରାଶ୍ୟେ ଆତୁର ମୁହିଁ , ମାତ୍ରତୋର
ଅଛି ଆଶା ସହଚରୀ ।
ନିଶା ଅନ୍ତେ ମିତ୍ର ଉଦେ ହୋଇତୋର
ପ୍ରଫୁଲ୍ଲ କରିବେ ମୁଖ ,
ମୋର ମିତ୍ରଲାଭ ଦୁରାଶା ଜାଣୁଛି
କିଅଛେ ଶମିବ ଦୁଃଖ ? ।
ପର ଦୁଃଖକାଳେ ଭଣ୍ଡୁଛି ଅନ୍ତରେ
ଦେଖୁଛି ଆଶାଚିତ୍ର ,
ପ୍ରୀତି ଦୀପଜନେ ଦେଖିଲେ ଲଗାଇ
ଶତ୍ରୁ ତୋରେ ଉଦ୍ଧାରି ,
ଦୁଷ୍ଟ ଭାଷଣ — ନୈରାଶ୍ୟ ଆବର୍ତ୍ତେ ,
ହୋଇ ମୁହିଁ ଜଡିତ ,

କେଉଁ ସଦେ ଏଥି,   ପରିତ୍ରାଣ ପାଇଁ
କହ ହେବ ଅଶାନ୍ତ ।
ନ ଦେଖି ନନ୍ଦନ   ଯେ ମୋହନ ରୂପ
କରୁଛି ଅଶ୍ରୁ ମୋଚନ ,
ପଉରମ୍ଭା ଭବେ   କ୍ଷୀଣ ହୋଇ ଅଛି
ଏ ମୋହର ଅପଘନ ,
ଅରେ ମନ ଭୃତ   କରନ୍ତୁର ହାର
ଯଙ୍ଗତରେ ଅନ୍ତୁ ରହ ।
କହରେ କାରଣ   ତେବେ ସୂକ୍ଷ୍ମ କିଂଧା —
ହେଉ ଦୁଃଖାନଳ ଦଗ୍ଧ ?
ସନ୍ନିପାତ ରୋଗୀ   ପ୍ରଳାପ ପରିସ୍ତେ
ଏହ୍ନପର ନାନାକଥା —
ଭାଷି, ପିକଭାଷୀ   ମାନସେ ତାହାର
ଲଭୁଥାଏ ବହୁବ୍ୟଥା ।

--୦--

## ପଞ୍ଚମ ସର୍ଗ ।

ନୃପ ସୁତ ପୁର-   ନିଭୃତରେ ବସି
କରନ୍ତି ମନେ ଭାବନା ,
ସେବକ ନନ୍ଦନୀ   ଅଟେ ପରାଧୀନା
ଏକଥା ମୋତେତ ଜଣା ।
ଫଣି ଶିର-ମଣି   ପରାପ୍ତ ଦୁର୍ଲଭ
ଅବଳାମୌଳି ରଞ୍ଜନ ।
ଜାଣିସୁନ୍ଦା ଜନ୍ମ-   ମୁଗ ଜଳପ୍ରାପ୍ତ
ବାରଣ ନମାନେ ମନ ।

ତାକୁ ଲଭିବାକୁ ବାଉଳ ପରାଏ
ବୃଥାପୋଷେ ହୃଦେଦମ୍ଭ ।
ହେବ ପ୍ରାଣେଣନଷ୍ଟ ତା ସ୍ପୃଷ୍ଟି, ପ୍ରଦୀପ-
ଶିଖାରେ ଯେସନେ ଶଲଭ ।
ତଥାପି ତାହାକୁ ନଲୋଡ଼ଲେ ମୋର
ବକ୍ଷେ, ଅନଗନ୍ତ ନାହିଁ
ଅଶନୀ, କରକା — ଭୟେ ମେଘଅଙ୍କା
ଚାତକ ଛାଡ଼ଇ କାହିଁ ?"
ଏମନ୍ତ ଭାଳି ସେ ଉଦ୍ୟାନ ଭିତରେ
ଏକା ପ୍ରବେଶିଲେ ଯାଇ
ଲତା ମଣ୍ଡପରେ କୁସୁମ ଶଯ୍ୟାକୁ
ଦୂରରୁ ଦେଲେ ଅନାଇଁ ।
ଲଜ୍ଜା, ଲଳନାକୁ ନପାରିଲେ ବାରି
କ୍ଷଣେକେ ସେ ନୃପତନୟ
ସୁକୋମଳ ଗାତ୍ର — ପରାଏ ଶୋଭନ
ଝୁଲୁଅଛି ଭୁଜଦ୍ୱୟ ।
ସୁରଙ୍ଗ ଅଧରେ ହୋଇଛି ପୂରିତ
ତାଙ୍କ କିଶଳୟ ରାଗ ,
ନବ ଯଉବନ କୁସୁମର ଘମ୍ଭ
ବ୍ୟାପ୍ତ ହୋଇଛି ସର୍ବାଙ୍ଗ ।
ନିରେଖି ବିଲୋକି ଚନ୍ଦ୍ରାବଳୀ ବୋଲି
ଚିହ୍ନିଲେ ବ୍ରଜନନ୍ଦନ ,
ଭାଳନ୍ତି ମାନସେ "ଆଜ ଏତେଦିନେ
ସାର୍ଥକ ହେଲା ନୟନ" ।

ଘନ ବଲ୍ଲଭୀର ଅନ୍ତରାଳେ ରହି
ଶୁଣିଲେ ଏସନ କଥା ,
ସେ କନକଲତା କହଇ ସେମାକୁ
"କପାଳକୁ ମନୋବ୍ୟଥା ।
ସ୍ୱଭାବ ସଖି ଅଛୁ ତୋ ମନେ
କହ ମୋତେ ଅକପଟେ ,
ତୋ ଅବସ୍ଥା ମୁଁ ତ ଦେଖୁଛି ନେପରୁ
କାମୀଜନ ଭାଗ୍ୟ ଘଟେ ।
ନୋହିଲେ କିପାଇଁ ଏଦଶା ହୋଇଛି
କର ସଖି ବିବରଣ ,
ରୋଗସ୍ଥିର ବିନା ଔଷଧ ବ୍ୟବସ୍ଥା
ହୁଏ ସିନା ଅକାରଣ ।"
ଦୀର୍ଘଶ୍ୱାସ ଛାଡ଼ି କହେ ଚମ୍ପାବତୀ
"ଅନ୍ୟ କା' ଆଗେ କହିବ ।
ସେ ମୋ ହୃଦବ୍ୟଥା ତୋତେ ସିନା କହି
ଦୁଃଖ ଭାଗିନୀ କରିବ ।
"ସଖି ଶିବାଳୟେ ଯେଦିନ ଦେଖିଲି
ରୂପ ମଦନ ସୁନ୍ଦର" ।
ଏତେ କହି ଲାଜେ କହି ନ ପାରିଲା
ତୁନି ହେଲା ଯୋଷାବର ।
ସଖୀ-ଅନୁରୋଧେ କହେ ପୁନର୍ବାର
"ସେଦିନୁ ମୋହର ମନ—
ମୋ ଅଧୀନେ ଆଉ ନାହିଁ, ରାଜସୁତ-
ପାଶେ କରୁଛି ଗମନ ।

ଯେବେ ଯତ୍ନ କଲ   ତେବେସେ ସଙ୍କଟ
ଫେରି ନ ଆସିଲା ଆଉ ,
ସେ ଚନ୍ଦ୍ରବଦନ — ସ୍ମର ଜାଗନ୍ତରେ
କ୍ଷୀଣ ହେଲ ଗନ୍ତୁ ।
ଦେଖରେ ସଜନି   ଅପଘନେମୋର
ଘୋଟିଅଛି ସ୍ମର-ଜ୍ୱର ,
ଯାଉଲେ ନାଗର — ଯାତନ ପ୍ରଯୋଗ-
କରି ଭୁଗେ। ଦୁରଙ୍କର ” ।
କହଇ କନକ-   ଲତା “ଆଗୋସହି
ମନେ ନକର ଭାବନା ,
ଉପାୟ କରତ   କରିବ ପୂରଣ
ତୋହର ମନ କାମନା ।
ସେ ନାଗରବର   ଉଦ୍ଦେଶେ ପ୍ରଣୟ-
ଧଉର ରତନାକର ,
ଛଳେ , କଉଶଳେ   ଦେଇ ମୁଁ ଆସିବି
ନିଶ୍ଚେ ସ୍ୱହସ୍ତ କର ” ।
ଶୁଣି କହେଯେମା   “ଯଦ୍ୟପି ଉପେକ୍ଷା-
କରିବେ ନୃପ ନନ୍ଦନ ,
ଅପମାନ ମାନି   ଯାଉ ହେବସିନା
ଭଲ କମ୍ପିତ ମୋ ମନ ” ।
ଶୁଣି କହେ ସଖୀ   “ତାପ ନିବାରଣୀ
ଶରଦ୍ଚନ୍ଦ୍ରର କିରଣ ।
ଆନନ୍ଦେ ଜ୍ୱାଗ୍ର   କେହ୍ନେ କିଗୋସହି
କରିଥାଏ ନିବାରଣ ?

ଯାଚକଲକ୍ଷ୍ମୀଙ୍କୁ　　ଲଭିବା ସଂଶୟ
　　ଅଛି ଗୋପ ଦେବ ବଚନା ,
ସେକାହିଁ ଦୁଷ୍ପ୍ରାପ୍ୟ-　　ହେବ ଯାକୁଲକ୍ଷ୍ମୀ
　　ନିଜେ କରିବେ ପ୍ରାର୍ଥନା ।
ଚମ୍ପାଘୋଷେ ଚମ୍ପା-　　ବତୀଗୋ ନଲୋଡେ-
　　କାହାକୁ ଜୀବେ ରତନ ,
ମାନସେ ସେ ତାଙ୍କୁ　　ଯାଉନେ ସକଳେ
　　କରିଥାନ୍ତି ଅନ୍ବେଷଣ ” ।
ନୃପସୁତ ସବେ　　ଶୁଣି ଭାଳୁଛନ୍ତି
　　"କି ଭାଗ୍ୟ ଆଜ ମୋହର ;
ଶୂଳରୁ ଉଦ୍ଧାରି　　ଦେଲାବନ୍ତୀ ପୃଷ୍ଠେ
　　ଚଢ଼ାଇସେ ରାମାବର ।
ଯାଙ୍କୁ ଚନ୍ଦ୍ରମୁଖି　　କରୁଛୁ ସଂଶୟ
　　ତୋପଦେ ହେବାକୁ କିଣା-
ଲାଳାପ୍ରୀତ ସେହି　　ଏକଥା କିଶ୍ଚୟ
　　ମନେ ଜାଣରେ ନଜାଣି ।
ଲଭ୍ୟରତ୍ନପଦ,　　ପଦରେ ଠେଲନ୍ତି
　　କେଏବେ ଅବିବେଚକ ,
ନବଧନ ନୀର,　　କରନ୍ତେକି ଉପେକ୍ଷା
　　କାହିଁ ତୃଷିତ ଚାତକ ? !”
ଲଗନୋପଯୋଗୀ　　ଦ୍ରବ୍ୟଦେଲାସଖୀ
　　ଜେମା କରକୁ ବଢ଼ାଇ ,
ଲେଖିପାରୁ ବାଳା　　କହେ “ଶୁଣସହି
　　ସଙ୍ଗାତ ହେଲାକି ନାହିଁ ? ”

"ଅହେମନଚୋର ସଦାତୁମ୍ଭପାଶେ
ରଖିଲ ଯେବେ ମୋହନ ,
କେଉଁ ଅପରାଧେ ମୋତେ ପରିତ୍ୟାଗ
କରୁଛ କହ କାରଣ ?
ଚିନ୍ତ ରହିଅଛି ତୃଷିତା ଚାତକୀ—
ବଡ ମୂର୍ଚ୍ଛି ଅନୁକ୍ଷଣ ,
କୃପା-ଜଳ-କଣା ବିତରଣ କରି—
ରଖ ମୋହର ଜୀବନ ।
ମାର-ଜଳଧି ଭାଷି— ଯାଉଛି ଏଅଣା—
ଅଛି ହୋଇ କର୍ଣ୍ଣଧାର ,
ନିଷ୍ଠୁର ତାରବ ନହତର ସ୍ରୀତ
ବିପଦେ କର ଉଦ୍ଧାର ।
ହେ କୃପା ସାଗର ତବ ପ୍ରୀତି-ଜଳେ
ଆଜ୍ଞା ଧୂର୍ତ୍ତି ହୃଦୟରେ ,
ହୋଇଛି ମଣ୍ଡିତା ଦୀନା ଅବଳାମୁଁ
ଅଛି ସିନା ସାହସରେ ।
ରତ୍ନ ଲଭ ଅବା କ୍ଷାରଜଳ ମୁଖେ
କିଅଛି ମୋର ଭାଗ୍ୟରେ ,
ସେ କଥା ତୁମ୍ଭଙ୍କୁ ଏକମାତ୍ର ଜଣା
ସେପ୍ରଭାତା ତୁମ୍ଭଙ୍କରେ " ।
ଦର୍ଶନ ଦେବାର ଏଯୋଗ୍ୟ ସମୟ
ହୋଇଛି ରାଜ ନନ୍ଦନ ,
ଚମ୍ପାବତୀ ଆଗେ ଦେଇ ଦରଶନ
କଲେ ଏହା ନିବେଦନ ।

"ତୁମ୍ଭଠାରୁ ବଳି ମନ୍ମଥ ମୋତେ
କରୁଛି ଅତି ପୀଡ଼ନ ,
ତୁମ୍ଭ ବଦନରେ ବାରୁଣ ପଦ୍ମ
ସଦା ଅସ୍ଥିର ମୋ ମନ ।
ଅଯାଚିତ ରୂପେ ଆସିଲ ବୋଲିମୁଁ
ଉଣୋନ୍ମ ଅନୁଗ୍ରହ ।
ମୋର ଅନ୍ତରରେ ଅଛ ଦୟାବନ୍ତ
ନାହିଁ ମୋର ଏ ବିରହ" ।
କୁମାରଙ୍କୁ ଦେଖି ସହଚରୀ ହର୍ଷେ
କହନ୍ତି "ହେ ମହାଭାଗ ,
ବାଞ୍ଛିତ ରତନ ଲଭିଲେ ସହଜେ
ମୋ ସଖୀର ବଡ଼ଭାଗ୍ୟ ।
ଧନ୍ୟପୂର୍ବ ପୁଣ୍ୟ କରିବାରୁ ସେ
ଧରିଲେ ଯା' ନିଶାମଣି ,
ମରୁଭୂମି ମଧ୍ୟ ଶୀତଳ ନିର୍ଝର
ଲଭିଲେ ସିନା ସଜନୀ ।"
ସହାର କାରଣ ଉଦ୍ଦେଶ୍ୟ ସମ୍ମୁଖେ
ଉଠିବାକୁ ଯୋଷାବର ,
ଉଦ୍ୟୋଗ କରନ୍ତେ ସାଦରେ ନିଷେଧ
କଲେ ନୃପତି କୁମର ।
ସଖୀ-ଅନୁରୋଧେ ସେମା-ପାର୍ଶ୍ୱବର୍ତ୍ତୀ-
ଆସନେ ଯୁବାରତନ ;
ହୃଦ-କୃତଜ୍ଞତା ବିନିବେଦିଲେ
ସାନନ୍ଦେ ଉପବେଶନ ।

ସଖୀଙ୍କି ସମ୍ବୋଧି ପୁଚ୍ଛନ୍ତି କୁମାର

"ଗାନ୍ଧର୍ବ ଯେମାନଙ୍କର-

କଣ୍ଠାରୁ ନିକଳି ଉଷାଙ୍କ ଲଭିଲି

ସଖିଗୋ ପ୍ରକାଶ କର "? ।

କହେ ସଖୀ "ପ୍ରଭୋ ଶାନ୍ତିର ଔଷଧ

ହେଲଣିତ କରଗତ ,

ଉଷା ନହେବାରୁ ରୋଗର ଶାନ୍ତି କି

ଅଛି କି ଅନ୍ୟ ଆବୃତ ?" ।

ନୃପସୁତେ ଅଭି- ବାଦନ କରଣେ

ବାଞ୍ଛାକଲେ ମଦିରାକ୍ଷୀ ,

ଚେଷ୍ଟାହେଲା ବ୍ୟର୍ଥ ଉଦରୁ ବାହାର

ରହିଲା ଗଳାରେ ଲାଗି ।

କମ୍ବୁକଣ୍ଠେ ବେଷ୍ଟେ ସଖିଙ୍କି କହନ୍ତି

"ସମ୍ଭ୍ରମ ଲଙ୍ଘି ନିର୍ଜନେ ,

ବାକ୍ୟାଳାପ ଯାହା କରିଅଛୁଁ ସ୍ୱାମୀ-

ଲାଗି ଜଣାଅ ଚରଣେ " ।

ହସି କହେ ସଖୀ "ଯେତାହା କରିଛି

କରୁ ସେହୁ ନିବେଦନ

ଅନ୍ୟର ପକ୍ଷରେ ଅନୁରୋଧକସ୍ତ

ଅଛି କେଉଁ ପ୍ରୟୋଜନ ?" ।

ଶୁଣି ସଙ୍ଗୀର ସେକଥା, କହନ୍ତି

ଯେମା କାଳସ୍ପୃ ବଚନ ,

"କୃପାହୁଦେ ଅମୃ- ପରୋକ୍ଷର କଥା

କ୍ଷମିବେ ନୃପନନ୍ଦନ " ।

କହନ୍ତୁ କୁମାର "ନିଜ-ଶଯ୍ୟାପାର୍ଶ୍ୱେ
ଅମ୍ଭୀଙ୍କୁ ଦଣ୍ଡର ସ୍ଥାନ, -
ଦେବାକୁ ସମ୍ମତା- ହେଲେ କ୍ଷେମା କରି -
ପାରେ ମୁଁ କ୍ଷମା ପ୍ରଦାନ"।
"ଏତିକି ମାତ୍ରକି ତୁମ୍ଭର ବାଞ୍ଛିତ?"
ପରିହାସେ କହୁଁ ସଖୀ, -
କୁଳଶ୍ରେଷ୍ଠେ ଶୁଣି ଲଳନା ଲଜ୍ଜାରେ
ଲପନ ଯୋଡିଲେ ଦମ୍ଭୀ,
ତରୁଣ ସେ ସଖୀ ଉପଯୁକ୍ତ କାଳ-
ଦେଖିକଲ ଗାତ୍ରୋତ୍ଥାନ,
ଉଶୀର ଆଣିବା ଛଳେ ସେ ସ୍ଥାନରୁ
କୁଳସଖୀରେ ପ୍ରୟାଣ।
କହେ କେମା "ସଖି- କେଣେ ଯାଉ ଅଛୁ
କରିବୁ ସହାନୁଭୂତି,"
ସଙ୍ଗିତେ ସଙ୍ଗନା- କହିଗଲ "ଯୁବା-
ଏଣିକି ତୋହରି ସିନା"।
ଲଜ୍ଜାଭରେ ବାଳା ଶଯ୍ୟାରୁ ଓହ୍ଲାଇ
ଯିବାକୁ ହୋଇଲା ଉଦ୍ୟ,
ଭରତରେ ତାର କର ଲଙ୍ଘି ଧାଇ
ସାଗ୍ରହେ ଧଇଲ ଯୁବା।
କହେ ଯୁବା, ସଖୀ- ଦେଇ ଯାଇ ଅଛି
ପ୍ରତିନିଧି ଅଧିକାର,
କିକାର୍ଯ୍ୟ କରିବ? କରିମୋତେ ଆଜ୍ଞା
ଧିକ୍ ଭକ୍ତି ଯୋଷାଧାର!

ସର୍ବାଙ୍ଗେ ଲେପିଛି    କର୍ପୂର ଚନ୍ଦନ
 କିବା କରିବ ବ୍ୟଜନ ,
ଅବା ରମ୍ଭାଜିରୁ-    ଯୁଗ ଅଙ୍କେ ଧରି
 କରିବଟି ସମ୍ବାହନ ? ”
ଲଜେ ତେମାମଣି    ରହିଲା ନିରବେ
 ଅବନତି ଯୋଡ଼ିମଥା ,
ନୃପପୁତ୍ର ନିମ    ଦେହ କଣ୍ଟକିତେ
 କହନ ପାରିଲା କଥା ।
ବାତେ ଚଳଦଳ-    ଦଳ ତୁଲ୍ୟ ଭରେ
 ହେଲା ଶରୀର କମ୍ପିତ ,
ହେଲା ସର୍ବାଙ୍ଗରେ    ଘରମ କରମ
 ମସ୍ତକ ହେଲା ଘୂର୍ଣ୍ଣିତ ।
ଶଯ୍ୟାରେ ବସାଇ    କହେ ଯୁବା "ସହି
 ତୋ ବିନା କୁସୁମ ଧନୁ ,
ବନ୍ଧ ପୁଷ୍ପଶର    କରନ୍ତି ଜର୍ଜ୍ଜର
 ଦେଖ ଏ ମୋହର ତନୁ ।
କରୁଣା ନନ୍ଦନେ    ଅନାଇ ଅମୃତ-
 ବାଣୀ କର ବରଷଣ ,
ମୋ ହୃତ୍,ଦହ୍ୟ-ତାପ    ଅଗୋ ଚନ୍ଦ୍ରାନନେ
 କରିଦିଅ ନିବାରଣ ” ।
କହେ କହେ ନେମା    ଦଭାବନା କିମ୍ପାଁ
 କରୁଛ ଏ ଅଡରଣ ,
ତୁମ୍ଭର ପଦାମ୍ବୁ    ଜ ନକ୍ଷୀ-ପକ୍ଷରେ
 ଏକଥା କି ଶୋଭନ ?” ।

ସ୍ୱର୍ଗ ଲଲନା    ବେନିମନେଛାତ
    ସ୍ନେହେ କିଣା ପଞ୍ଚସ୍ୱରେ ,
ମାରଣର ଘାତେ    ଉଭଯେ କାତର
    ଭେଟିପୁଣି ନିର୍ଜ୍ଜନରେ
ଏମନ୍ତ ସ୍ଥଳେକି    ଶାସ୍ତ୍ରର ମର୍ଯ୍ୟାଦା
    ହୁଅଇ ପ୍ରତିପାଳନ ?
ମୃଣାଳସୂତ୍ରରେ    ମତ୍ତ ଦନ୍ତୀବଳ
    କରିକି ହୁଏ ବନ୍ଧନ ?
ରସିକ ସଂସାରେ    କଲେ ଅଭିଷେକ
    ଶୃଙ୍ଗାରୂପ ଯୁବାବରେ ,
ସୁରୋତ୍ତମ ରୂପେ    କାମଦେବ ନଚେ
    ହଟେ କରି ଅନନ୍ଦରେ ।
ଅହ୍ୟନାୟିକାରୂପେ    ହେଲେ ଉପସ୍ଥିତ
    ରତି ଆସି ତୋଷ ମନେ ,
ରସିକ ରାଜକୁ    ନେଇ ବସାଇଲେ
    ବାଲାଛାନୁ ସିଂହାସନେ ।
ରସାଲତୋରଣ-    ପଲ୍ଲବ ଅଲକା-
    ଟଂବେଳ ବଶୋଭିତ ଯହିଁ ,
ସେଲତା ମଣ୍ଡପ    ସ୍ୱଭାବରେ ହେଲା
    ସୁରମ୍ୟ ବିତାନ ତହିଁ ।
ବାହୁଯୁଗ ପୁଷ୍ପ—    ମାଳିକା ସାନନ୍ଦେ
    କଣ୍ଠରେ ଦେଲେ ଲମ୍ବାଇ ,
ତାଟଙ୍କ ଯୁଗଳ-    ଅଳଙ୍କରେ ଯହେ
    ଦେଲେ ମଙ୍ଗଳ ବନ୍ଧାଇ !

ଜାନୁଯୁଗ ହେଲା    ରମ୍ଭାତରୁ, ହେଲା
ପୂର୍ଣ୍ଣକୁମ୍ଭ ବେନିସ୍ତନ ।
କିଙ୍କିଣୀ ବାଦ୍ୟକା,    ନାସାମଣି ନଟୀ-
ପଦ୍ମ କଲା ନର୍ତ୍ତନ ।
ପ୍ରୀତ ସୁଧାଭୋଗ    କର ପରିତୋଷ
ରସିକା ରସିକ ରାଜ, ।
ସୁନାଶୀର ଶିଖୀ    ଭୃଙ୍ଗ, ଭୃଙ୍ଗତର
ମାନବେ ପାଞ୍ଚିଲେ ଅଙ୍ଗ ।

:—:୦:—:

ଷଷ୍ଠ ସର୍ଗ ।

ନାଗର ନାଗରୀ    ଏହିରୂପେ ମୈତ୍ରୀ-
ପୀରତରେ ହରଷରେ ,
କଟାଇଲେ ଦିନ    ସଖି-ଜ୍ଞାତସାରେ
ଅନ ସର୍ବ ଅଗୋଚରେ ।
ସାଗରେ ସରସ-    ପଦ୍ମ ବେନିଏ
ପ୍ରୀତରେ ନୃତ୍ୟନ୍ତ ବାରୁ ,
ଜଳଧର ଅଙ୍ଗେ-    ଚପଳା, କ୍ଷୀରରେ
ମିଶିଗଲା ହରେ ବାରୁ ?
ବାହୁ ଭିଡାଭିଡ଼ି    ନାନାମତେ କେଳି
ବଜନେ କରନ୍ତି ରଙ୍ଗେ ,
ବାସନ୍ତୀ ଲତିକା    ହେଲାକି ଜଡ଼ିତ
ସହକାର ତରୁ ଅଙ୍ଗେ ?।
ପ୍ରେମ ପାରାବାରେ    ହଂସ ହଂସୀ ଯେ
ମଗ୍ନରୁ ଥାଆନ୍ତି ବେନି .

ରଙ୍ଗେ କରୁଥାନ୍ତି ପ୍ରେମାଳାପ ପୁଣି
କେତେ ଭାବ ଘେନାଘେନି ।
ମଧୁକର ରୂପେ ପ୍ରୀତି ସୁମନରୁ
କରୁଥାନ୍ତି ମଧୁପାନ ,
କେତେବେଳେ ପ୍ରେମ- ଗ୍ରନ୍ଥ ଦିଏ ଶିକ୍ଷା
ଯୁବା ହୋଇ ଅବଧାନ ।
କେତେବେଳେ ସେହି ପ୍ରେମିକ ପ୍ରେମିକା
ମାତିଯାନ୍ତି ପ୍ରେମରଣେ ,
ତହିଁ ପରାଜୟ ଲଭି ସେ ପ୍ରେମିକ
କୃତାର୍ଥ ହୁଏ ସ୍ୱମନେ ।
କେତେବେଳେ ପୁଣି କର ଧରାଧରି—
ହୋଇ ଉଦ୍ୟାନେ , ବନେ—
କରନ୍ତି ଭ୍ରମଣ ଫୁଲ୍ଲ ଫୁଲ ଆଣି
ଯୁବା ଖଞ୍ଜେ ବାଳା କର୍ଣ୍ଣେ ।
କେତେବେଳେ ବାଳା ଅଗୋଚରେ ଯୁବା
ଯାଉଥାଏ ଲତାକୁଞ୍ଜେ ,
ଛନ୍ନେ ଲୋଡେ ବାଳା ପଛୁ ଆସେ ଧାଇଁ
ଅମୂଲ୍ୟ ଆନନ୍ଦ ଭୁଞ୍ଜେ ;
ତାହା ଦେଖି ବାଳା ବସିଯାଏ ମାନେ
ଅଳୀକ କୋପ ପ୍ରକାଶି
ନାନା ଚାଟୁରୀରେ ରସିକ ଶେଖର
ସେ କୋପକୁ ଦିଏ ନାଶି ।
ଶ୍ରାନ୍ତି ଦୂରପାଇଁ ଲତା ବିତାନର
ଛାୟାରେ ସେ ବେନିଜନ ,

ବସି ମଧୁପର ପୁଷ୍ପ-ମଧୁ ପାନ-
    କରୁଥାନ୍ତି ଅବଲୋକନ ।
ଝଙ୍କାର ହୋଇ ସରସୀ-ଶୀକର
    ଭେଟିଅଙ୍ଗେ ସମୀରଣ ;
ଦେହିଙ୍କ ବଦନୁ ଶ୍ରାନ୍ତି-ଜଳବିନ୍ଦୁ
    କରଇ ଅପନୋଦନ ।
ଭୃଙ୍ଗଠାରୁ ଶିଖି ବାଳାଧରାମୃତ
    କରେ ହର୍ଷେ ଯୁବାପାନ ,
ରସିକଙ୍କ ମତେ ଇନ୍ଦ୍ରପଦ-ସୁଖ
    ନୁହଇ ଯାର ସମାନ ।
ପ୍ରୀତ କ୍ଷୀରାବ୍ଧିରେ ଲକ୍ଷ୍ମୀ , ନାରାୟଣ
    ପ୍ରାପ୍ତ ରହିଥାନ୍ତି ଯହିଁ ,
ପ୍ରେମ-ସୁଖ-ଭୋଗ କରି ମନୁଁ ସର୍ବ-
    ଦୁଃଖ ଦିଅନ୍ତି ବିରତି ।
ସ୍ନେହବେଳେ ବେନି ଜଡ଼ ରହୁଥାନ୍ତି
    ମଣିକାଞ୍ଚନ ଯେସନେ ,
ରଙ୍କ ପ୍ରାପ୍ତରତ୍ନ ମରନ୍ତି ବେନିଏ
    ଅଙ୍କ ଛଡ଼ାହେଲେ କ୍ଷଣେ ।
ବେନିଏ ବେନିଙ୍କ ନାନାଉପଚାରେ
    ତୋଷ କରୁଥିଲେ ମନ ,
ବେନିଏ ବେନିଙ୍କି ଅଲୋକ ସାର୍ଥକ
    ମଣୁଥିଲେ-ସ୍ୱଈକ୍ଷଣ ।
ଆମୋଦେ କୌତୁକେ ପଲକ ସମାନ
    ମଣୁଥିଲେ ନିଶୀଦିନ ,

ପଲକ ମାତର          ବେନିଏ ବେନିଙ୍କ
ପାଶ୍ୱ ନୋହୁଥିଲେ ଭିନ୍ନ ।
ସଙ୍ଗ ଛଡାଇବାର          ରଜନୀ ପ୍ରଭାତେ
ଯିବେବୋଲ ଅଯୋଜନ ,
ଅକସ୍ମାତେ ଅହା          ଦାନାମେଘେ ଶିରେ
ହେଲାକି ବଜ୍ରପତନ ?
କ୍ଷୁଧାତୁର ଗ୍ରାସେ          ଧୂଳିପାତ ହୋ
କାହାର ଦେହ ସମ୍ଭବ ?
ଏତେ ସୁଖେଥାଣି          ଏବିଛେଦ ଦୁଃଖ
ବାଳିଲୁ କିପାଁ ଦଇବ ?
ଉଦ୍ୟାନ ମଧ୍ୟରେ          କରୁଣ ବିଳାପ-
କଲେ ଅହା ବେନିଜନ ,
ଦୁଃଖିତ ହୃଦୟେ          ଅଶ୍ରୁଧୂଷ୍ଟି ନେବେ
କଲେ ବିଦାୟ ଗ୍ରହଣ ।
ଦୃଢ଼ ପ୍ରତଜ୍ଞାର          ସହିତରେ ସ୍ଥିର
କଲେ ସେ କାଳେ ଏସନ ,
ପରସ୍ପରେ ବିଭା          ହେବେ, ହେଲେ ଅନ
ତେଜିବେ ସ୍ୱ ସ୍ୱ ଜୀବନ ।
କେତେକ ଦିନ ଅନ୍ତେ          ନିଜ ନିଜ ଦୂରେ
ହେଲେ ଯାଇ ପରବେଶ ,
ବିଚ୍ଛେଦ ହେତୁରୁ          ବେନିଙ୍କ ହୃଦୟେ
ସୁଖ ନରହିଲା ଲେଶ ।
ମଣିହରା ଫଣୀ          ଗଣ-ବଣା-ବେଣୀ-
ପରସ୍ପରନ୍ତ ନିରତେ ,

ରଙ୍କ କରଗତ ରତନ ହରାଇ
ବ୍ୟାକୁଳ ହେଉଛୁ ସତେ ?
ରାଜସୁତ ନିତ ଯେମା ସଖି-ହସ୍ତେ
ନିଜ୨ ପିତାପାଶେ ,
ହେଲେ ସମାଗତ ହେଇ ପ୍ରସ୍ତୁତ
ସଙ୍ଗତେ ହେବାର ଆଶେ ।
ବେନିଙ୍କର ପିତା ମତ ଫେରିବାର
ଜାଣିବେଲେ ମହୋଲ୍ଲାସ
ବେନି ମଧ୍ୟେ ବାଦ ଥିବାରୁ ନକଲେ
କେହୁ ସମ୍ମତ ପ୍ରକାଶ ।
ଅନ୍ୟ ଉପଯୁକ୍ତ ପାତ୍ର, ପାତ୍ରୀ ସ୍ଥିର
କଲେ ବିଭା ଦେବାପାଇଁ ,
ରାଜ ସୁତ ରାଜ- ସୁତା ହେଲେ କ୍ଷୁବ୍ଧ
ସେ ଦାରୁଣ ବାର୍ତ୍ତା ପାଇ ।
ବେନିଙ୍କର ସନ୍ଧି ଅଟଳ ପ୍ରତିଜ୍ଞା
ଉଦେବେଲା ବେନିମନେ ,
ବନ୍ଧପରିକର- ହେଲେ, ଦୃଢେ ତାହା
ପ୍ରତିପାଳନ କରନ୍ତେ ।
ବିଷ୍ମୟ ହୃଦର ହସ୍ତେ ପତ୍ର ଗୁପ୍ତେ
କଲେ କୁମାର ପ୍ରେରଣ ,
କନକଲତାକ ସାହାଯ୍ୟରେ ପାଇ
କଲେ କୁମାରୀ ପଠନ ।
ସେ ସମ୍ବାଦ-ପୂର୍ତ୍ତି- ଇନ୍ଦୁ ଉଚ୍ଛ୍ୱସି
କଲବାଳା ହର୍ଷ ସିନ୍ଧୁ ।

ଗ୍ରୀଷ୍ମ-କ୍ଳାନ୍ତ-କଣ୍ଠ ଚାତକ ମୁଖରେ
ପଡ଼ିଲାକି ଜଳବିନ୍ଦୁ ? ।

## ସପ୍ତମସର୍ଗ ।

[illegible] ହେଲା ସନ୍ଧ୍ୟାକାଳ ଆସି
ଅବନୀରେ ଉପସ୍ଥିତ ,
ପାପ-ପ୍ରାବଲ୍ୟରେ ପୁଣ୍ୟ-ପ୍ରାୟହେଲେ
ଦିନମଣି ଅସ୍ତମିତ ।
ବ୍ୟସନୀ ମାନବ ବିଦ୍ୟା-ପ୍ରାପ୍ତହେଲା
ପଙ୍କଜର ଶିରୀ କ୍ଷୟ ।
ତପୋଭ୍ରଷ୍ଟ ଯୋଗୀ- ପରାସ୍ତ ଦମର୍ଷ
ହେଲେ ମଧୁକର ଚସ୍କୃ ।
ଦୁଷ୍ଟ ନୃପତିର ଶାସନ ପରାସ୍ତ
ହେଲା ଅନ୍ଧାର ପୀଡ଼ନ ,
କୃପଣ ମାନବ- ସମ୍ପଦର ଗୁଲ୍ଭ
ହେଲା ବ୍ୟର୍ଥ ନୟନ ।
ଏକାଳରେ ଶିବ- କ୍ଷେତ୍ରେ ଚନ୍ଦ୍ରାବତୀ
ଶରଚ୍ଚନ୍ଦ୍ର ନିଭାନନୀ ।
ପୁଷ୍ପୋଦ୍ୟାନେ ଲତା- ମଣ୍ଡପେ ବସିଛି
ସଙ୍ଗତେ ଅଛି ସଜନୀ
[illegible] ମାନସେ କରିବ ଲୋକନ
ପ୍ରାଣନାଥ—ମୁଖଶଶି ।
ତାର ମୁଖୁଁ ପଦେ ଶୁଣିବ ଭାରତୀ
କର୍ଣ୍ଣେ ସୁଧା ବରଷି ।
ହୃଦର ଧ୍ୟାନ କେବଳ ଅନ

ବାହାର ସର୍ପ ଭୂଷଣ,
ପୁଷ୍ପ-ସୁକୁମାରୀ ସେ ରାଜକୁମାରୀ
ପଦ୍ମରେ କଲା ଦଂଶନ ।
ଚିହ୍ନି ୨ ବିଷ- ଜ୍ୱାଳାରେ ଅଜ୍ଞାନ-
ହେଲା ଅବଳା ରତନ ।
ଶିରପାଶେ ବସି ପ୍ରିୟ ସଖୀତାର
କରୁଛନ୍ତି ଦୁଃଖେ ରୋଦନ ।
ଏକାଳେ କୁମାର ପୂର୍ବାସ୍ଥିର ହିମେ
ହେଲେ ତହିଁ ଉପସ୍ଥିତ,
ଦେଖିଲେ ଘଟଣା ବାତେ ରମ୍ଭାପ୍ରାୟ
ଶରୀର ହେଲା କମ୍ପିତ ।
ବରଷାରେ ଗିରି- ଦେହୁଁ ନିର୍ଝରପ୍ରାୟ
ଦେହୁଁ ବହେ ସ୍ୱେଦଜଳ,
ହେଲେ ସଂଜ୍ଞା ଶୂନ୍ୟ ଛିନ୍ନ ମୂଳତରୁ
ପ୍ରାୟ ପଡ଼ିଲେ ଭୂତଳ ।
ପ୍ରଳୟ ଅନ୍ତରେ କରନ୍ତି ବିଳାପ
ଅରେ ଶରଚନ୍ଦ୍ର ମୂର୍ତ୍ତି, *
କେଣେ ଚାଲିଗଲୁ ନକହି ଉପଦେ
କରିମୋତେ ମହାଦୁଃଖୀ ।
ତୋହ ବିନା ମୋତେ ନୂଆ ଅନ୍ଧପରି
ଦଶଦିଶେ ଅନ୍ଧକାର,
ମୋତେରଖି ତୋତେ ନେଇଗଲା ଯାହା
ଏ କି ବିଧିର ବିଚାର ?

* ଶୋକାଦି ବଶତଃ ମୂର୍ଚ୍ଛାର ନାମ ପ୍ରଳୟ ।

ତୋର ଦୁଃଖେ ଦୁଃଖୀ    ତୋର ସୁଖେ ସୁଖୀ
    ଥିଲେ ଏହି ପ୍ରିୟସହି ,
ତୋହ ପାଇଁ କେତେ    କରନ୍ତି ବିଳାପ
    ଦୁଃଖେ ଲୋଟୁଛନ୍ତି ମହୀ ।
ତାଙ୍କୁ ଥରେ କହ    ତୁ ପ୍ରିୟବଚନ
    ଯାଣା ଜଣା ଗୁରୁ ସ୍ୱନେ,
ତାଙ୍କଠାରୁ ତୋର    ଆନପ୍ରିୟ କେହି
    ନାହିଁ ଯେଣୁ ଏହୁବଚନେ ।
ତୋହ ଲାଭଆଶେ    ରଖିଥିଲି ପ୍ରାଣ
    ସହି ବିରହ କଷଣ ,
ସର୍ବ ସୁଖ ଆଜ    ଗଲାସିନ ତହିଁ
    ଆଉ କିସ ପ୍ରୟୋଜନ ?
"ପରଲୋକେ ତୋତେ    ଲଭିବ" ଏବାଞ୍ଛା
    ପୂରାନ୍ତୁ ପରମେଶ୍ୱର ,
ଏତେଭାଷି ଅପି    ଦେଲାବକ୍ଷେ ଭୁସି
    ପଡିଲା ଧରା ଉପର ।
ଦେଖୁଁ ୨ ତାର    ପ୍ରାଣ-ପକ୍ଷୀ ଗଲା
    ଦେହ ପିଞ୍ଜରାରୁ ଚଳି ,
ତାର ପତି ପ୍ରାୟ    ରହିଲା, ଏଦୃଶ୍ୟ
    ଦେଖି ମହା ଶୋକେ ଅଳୀ ।
ହୃଦ ସେ ଖଡ଼ଗ    କାହିଁ ଯିବ ବହି
    ନପାରିଲା କରି ସ୍ଥିର ;
ଶିରେ କର ମାରି    କାନ୍ଦିଲା, ନୟନୁ—
    ବହିଯାଏ ଅଶ୍ରୁନୀର ।

କିଛି କ୍ଷଣ ପରେ ମନେକଲ ଭଲି
ମିଳିଲା ଯେମାର ପାଶ ,
ଅଙ୍ଗୁଳି ଲଗେଣି ଜାଣିଲା ନାସାରୁ
ବହୁଅଛୁ କ୍ଷୀଣ ଶ୍ୱାସ ।
କଲା ଆଶା ତାର— ପ୍ରିୟ ସଖି ପୁଣି
ଲାଭ କରିପାରେ ପ୍ରାଣ ।
କୋଳେଧରି କଲା ଅତି ଯତନରେ
ନାନା ଉପଚାର ମାନ ।
କ୍ରମେ୨ ଯେମା ଲଭିଲା ଚେତନା
କଲାଗାବ ସଞ୍ଚାଳନ ;
ଫେଡିଲା ନୟନ ଦେଖେ ହେଲାବଳ
ଭୁଣ୍ଡ ସ୍ଫୁରିଲା ବଚନ ।
ସଖିଠାରୁ ଜାଣି ସର୍ବ ବିବରଣ
ଦେଖିଲା ନାଗଶ୍ୱର ,
ନିର୍ଜୀବେ ପଡ଼ିଛି ରାଜସୁତ ଦେହ
ରକତେ ହୋଇ ଜର୍ଜର ।
ଛିନ୍ନତାର୍ଚ ବୀଣା ପରାପ୍ତ, ମୂର୍ଚ୍ଛିତେ
ପଡ଼ିଲା ରାଜ ସୋବାଳୀ ,
ବହୁକ୍ଷଣେ ଚେତା ଲଭି , କାନ୍ଦକାନ୍ଦେ
"କେଣେ ଗଲ ଗଲାନାଳି" ।
ଏକସାଙ୍ଗେ ଅତି କାତରେ ଶୋକ—
ହୃତ କରିଲା ଉଚ୍ଚ ,
ସୌଦାମିନୀ ପ୍ରାୟ ହେଲା ଅଶୋଭିତା
ଚନ୍ଦ୍ରଗୋଷ୍ଠୀ ଚନ୍ଦ୍ରାବତୀ ।

ମୁକ୍ତ କେଶ ଜାଲ ମେଘମାଳ, ଖର-
ଶ୍ୱାସ ପ୍ରବଳ ପବନ ,
ଅପାର ପରାୟୃ ଅଶ୍ରୁଧାରା ହେଲା
ବେଳ ନୟନ ପତନ ।
ଜଳଧର-ମନ୍ଦ୍ର ପ୍ରାପ୍ତ ହାହାକାର-
ରବ ହେଲା ମେ ଘୋର ,
ସୁଖ-ସୂର୍ଯ୍ୟ ହେଲା ଅଦୃଶ୍ୟ, ଘୋଟିଲା
ଅତି ଦୁଃଖ ଅନ୍ଧକାର ।
ଆଦରେ କାନ୍ତଙ୍କୁ ଭେଟ, ବାଳାମଣି
ଧୁଆଇ ଶିର କଗୃଢ ,
କେବେ ନ ଦେଖିବ ଏଦୃଶ୍ୟ, ଜୀବନ-
ଯାପରେ ବହନ ଗୁଢ ।
ଉରଗ ଦଂଶନ କରିଥିଲା ଅହା
ଆଜ୍ଞମୋତେ ଶୁଭକ୍ଷଣେ ,
ମୋଟକଳ ଦୁଃଖ— କର ଅବସାନ
ବିନାଶି ଥିଲା ଜୀବନେ ,
ଲଭିବା ପାଇଁକି ସେ ସୁଖ, ଭଜନ-
ହେବ କାହିଁ ମୁଁ ପାପିନୀ ,
ପାପ ଜାଗରଣ କିପାଇଁ ଅସିଲା
ମୁଁ ବଡ ହତଭଗିନୀ ।
ମୋର ଘର ପାଇଁ ଅହା ପ୍ରାଣବନ୍ଧୁ
ଦେଲେ ଅମୂଲ୍ୟ ଜୀବନ ,
ତାହାଙ୍କୁ ହରାଇ କେଉଁ ସଥେ ଘର
ପ୍ରାଣ କରିବ ଧାରଣ ? ।

ପ୍ରାଣେଶ ପଦାଙ୍କ- ଅନୁସରି, ପର-
ଲୋକେ କରୁଛନ୍ତି ଗମନ,
ତହିଁ ତାଙ୍କୁ ମୋତେ ଭେଟାଅ ହେହର
ଶ୍ରୀପଦେ ଏ ନିବେଦନ" ।
ଏତେ ଭାଷି ଅସି ମୁନେ ମହାବେଗେ
ପଡ଼ିଲା ବାଳା କଣ୍ଠଡି,
ଅସ୍ତ୍ରାଘାତେ ଦେହୁଁ ସ୍ରବିଲା ରକତ
ଅହା ପ୍ରାଣ ଗଲା ଗ୍ରୁନି ।
ହୃଦ ବିଦାରକ- ଦୃଶ୍ୟ ଦେଖି ସଖୀ-
କଲା ବହୁତ କ୍ରନ୍ଦନ,
ଶିବ କ୍ଷେତ୍ରେ ଯାଇ ଦୁଃଖେ ଜଣାଇଲା
ଏସକଳ ବିବରଣ ।
ବେଣୀ ଦେଶ-ଭୂପ ଚରଙ୍କ ମୁଖରୁ
ଶୁଣି ଘଟଣା ସକଳ,
ଶିବକ୍ଷେତ୍ରେ ଯାଇ ହେଲେ ଉପସ୍ଥିତ
ଶୋକରେ ହୋଇ ବିହ୍ୱଳ ।
କିଶୋର, କିଶୋରୀ- ଦୁହିଙ୍କି ଏକତ୍ରେ
କଲେ ଅନଳ ସଂସ୍କାର,
ଶୋକାତୁରେ ଅଶ୍ରୁ- ଜଳରେ ଭାସିଲେ
ବେଣୀରାଜ ପରିବାର ।
ତରବାଦ ମୁକ୍ତ ହେଲେ ବେଣୀଭୂପ
ମିତ୍ରତା ସୂତ୍ରେ ବନ୍ଧନ
"ପ୍ରେମୋଦ୍ୟାନ"ନାମେ ସେ ବନ୍ଧୁ ବିଖ୍ୟାତ
ହେଲା ସେହି ଉପବନ ।।

ସମ୍ପୂର୍ଣ୍ଣ ।